ଡିସେମ୍ବର ୧୯୬୯ (ପୌଷ ୧୯୧୧)
December 1969 (Pausa 1911)

**Sarisrip-ki-Kahani (Oriya)**

ଓଡ଼ିଆ ଅନୁବାଦ : ଶକ୍ତି ବିଶ୍ୱାଳ

ମୂଲ୍ୟ : ଟ ୧୩-୦୦

*Price Rs. 13-00*

ଡାଇରେକ୍ଟର, ପ୍ରକାଶନ ବିଭାଗ, ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟ, ଭାରତ ସରକାର, ପାଟିଆଲା ହାଉସ, ନୂଆଦିଲ୍ଲୀ-୧୧୦୦୦୧ଙ୍କ ଦ୍ୱାରା ପ୍ରକାଶିତ ।

ବିକ୍ରୟ କେନ୍ଦ୍ର—ପ୍ରକାଶନ ବିଭାଗ :

* ସୁପର ବଜାର, କନଟ ସର୍କସ, ନୂଆଦିଲ୍ଲୀ-୧୧୦୦୦୧
* କମର୍ସ ହାଉସ, କରିମଭାଇ ରୋଡ଼, ବାଲାର୍ଡ଼ ପିଅର, ବମ୍ବେ—୪୦୦୦୩୮
* ୮, ଏସପ୍ଲାନେଡ ରୋଡ, କଲିକତା—୭୦୦୦୬୯
* ଏଲ. ଏଲ. ଅଡିଟୋରିଅମ, ଆଣ୍ଣାସଲାଇ, ମାଡ୍ରାଜ—୬୦୦୦୦୨
* ବିହାର ରାଜ୍ୟ ସରକାରୀ ବ୍ୟାଙ୍କ ବିଲଡିଂ, ଅଶୋକ ରାଜପଥ, ପାଟନା—୮୦୦୦୦୪
* ସରକାରୀ ପ୍ରେସ ନିକଟ, ପ୍ରେସରୋଡ଼, ତ୍ରିଭାନ୍ଦ୍ରମ—୬୯୫୦୦୧
* ୧୦ବି, ଷ୍ଟେସନ ରୋଡ଼, ଲକ୍ଷ୍ନୌ—୨୨୬୦୧୯
* ଷ୍ଟେଟ ଆରକିଓଲୋଜିକାଲ ମିଉଜିୟମ ବିଲଡିଂ ପବ୍ଲିକ ଗାର୍ଡ଼େନ, ହାଇଦ୍ରାବାଦ-୫୦୦୦୦୪

ବ୍ରହ୍ମପୁର ଶାରଦା ପ୍ରେସରେ ଶ୍ରୀ ରଜନୀକାନ୍ତ ପାଢ଼ୀଙ୍କ ଦ୍ୱାରା ମୁଦ୍ରିତ

# ପ୍ରସ୍ତାବନା

ଆଜିଠାରୁ କୋଟି କୋଟି ବର୍ଷ ପୂର୍ବେ ଏହି ବିଶାଳ ଧରଣୀରେ, ପେଟରେ ଭର ଦେଇ ଚାଲୁଥିବା ଜୀବମାନଙ୍କର ବିକାଶ ହୋଇଥିଲା । ଏହି ଶ୍ରେଣୀର ଜୀବମାନଙ୍କ ମଧ୍ୟରେ ଏପରି ଭୟଙ୍କର ଜୀବ ସବୁ ଥିଲେ ଯେ, ଯେଉଁମାନଙ୍କ ବିଷୟ ପଢ଼ିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ପେଟରେ ଭର ଦେଇ ଚାଲୁଥିବା ଏହିସବୁ ଜୀବଙ୍କୁ ସରୀସୃପ କୁହାଯାଏ ।

ଏହି ବିଶାଳ ସରୀସୃପ ପରିବାର ମଧ୍ୟରେ ସାପ, କଇଁଛ ଓ ଝିଟିପିଟି ତଥା କୁମ୍ଭୀର ଜାତୀୟ ଜୀବ ଅନ୍ତର୍ଭୁକ୍ତ । ଏହି ସର୍ପ ପରିବାର ମଧ୍ୟରେ ଆଦି-ଦାନବ ସର୍ପ ମଧ୍ୟ ଅନ୍ତର୍ଗତ । ସେହିପରି ଝିଟିପିଟି ପରିବାର ମଧ୍ୟରେ ବଡ ବଡ ଝିଟିପିଟି, ଉଡୁଥିବା ଝିଟିପିଟି, ରଙ୍ଗ ବଦଳୁଥିବା ଝିଟିପିଟି ଠାରୁ ଆରମ୍ଭ କରି ଘରେ ରହୁଥିବା ଝିଟିପିଟି ଅନ୍ତର୍ଭୁକ୍ତ ।

ସାପ ସହିତ ଆମେ ସମସ୍ତେ ଖୁବ୍ ଭଲ ଭାବରେ ପରିଚିତ । ସବୁ ଦେଶରେ ଅନେକ ଜାତିର ଓ ଅନେକ ପ୍ରକାରର ସାପ ଅଛନ୍ତି । ବାତାବରଣ ଓ ଜଳବାୟୁର ଭିନ୍ନତା ହେତୁ ଭିନ୍ନ ଭିନ୍ନ ଦେଶରେ ଏମାନଙ୍କର ରଙ୍ଗ ରୂପ ଓ ଆକାରରେ ତାରତମ୍ୟ ଦେଖାଯାଏ ।

ଅଧିକାଂଶ ସାପ, ମୂଷା ବା ଅନ୍ୟ ଜୀବମାନଙ୍କ ଦ୍ୱାରା ନିର୍ମିତ ଗାତରେ ବାସ କରନ୍ତି । କେତେକ ସାପ ଅଛନ୍ତି ଯେଉଁମାନେ ପାଣିରେ ମଧ୍ୟ ବାସ କରନ୍ତି । କିନ୍ତୁ ସ୍ଥଳ ଭାଗରେ ବାସ କରୁଥିବା ସାପଙ୍କ ସଂଖ୍ୟା ସବୁଠାରୁ ଅଧିକ । ଆଦି ଯୁଗର ଦାନବ ସରୀସୃପ ଫସିଲ ଏବେ ବି ଦେଖିବାକୁ ମିଳେ । ଏହି ପ୍ରାଣୀର ଲମ୍ବ ୩୫ ମିଟର ପର୍ଯ୍ୟନ୍ତ ହେଉଥିଲା । ଏହି ଆଦି ସରୀସୃପ ପରିବାରର ଶେଷ ଦାୟାଦ 'ସ୍ଫେନୋଡନ' ଝିଟିପିଟି ଆଜି ବି ଜୀବିତ ଅଛନ୍ତି । ଏହା ନିଉଜିଲ୍ୟାଣ୍ଡ ଦ୍ୱୀପରେ ଦେଖିବାକୁ ମିଳନ୍ତି । ଏହି ଦେଶର ଆଦିବାସୀ 'ମାଓରୀ' ମାନେ ଏହି ଝିଟିପିଟିକୁ 'ଟୁଆଟୋରା' ନାମରେ ନାମିତ କରିଛନ୍ତି ।

ଘରମାନଙ୍କରେ ଦେଖା ଯାଉଥିବା ଝିଟିପିଟି ମଧ୍ୟ ଏହି ବିଶାଳ ସରୀସୃପ ପରିବାରର ଜଣେ ଜଣେ ସଦସ୍ୟ ଏହା ଜାଣିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଏପର୍ଯ୍ୟନ୍ତ ଏହି ଜାତିର ଜୀବ ପ୍ରାୟ ୧୮୯୨ ପ୍ରକାରର ଥିବାର ଜଣାଯାଇଛି । ବିଭିନ୍ନ ପ୍ରକାର ଜଳବାୟୁ ଓ ବାତାବରଣ ଅନୁଯାୟୀ ଝିଟିପିଟିମାନଙ୍କର ଭିନ୍ନ ଭିନ୍ନ ରଙ୍ଗ, ଆକୃତି ଓ ଆକାର ଦେଖିବାକୁ ମିଳେ । କେତେକ ଝିଟିପିଟି ଦୁଇ ମିଟର ପର୍ଯ୍ୟନ୍ତ ଲମ୍ବ ହୋଇଥାଆନ୍ତି । ଏହିସବୁ ଝିଟିପିଟିମାନଙ୍କର ଦେହ ପତଳା ଚର୍ମରେ ଆବୃତ ହୋଇଥାଏ । ପୁଣି କେତେକ ଝିଟିପିଟିଙ୍କ ଲାଞ୍ଜ ଏତେ ବଡ ହୋଇଥାଏ ଯେ ସେମାନେ ଏହି ଲାଞ୍ଜ ଝାପଟାଇ ତାର ଶତ୍ରୁକୁ ଭୀଷଣ ଭାବରେ ପ୍ରହାର କରିପାରନ୍ତି । କେତେକଙ୍କ ଲାଞ୍ଜ ପୁଣି କଣ୍ଟାଯୁକ୍ତ ହୋଇଥାଏ । ଏହି କଣ୍ଟାଯୁକ୍ତ ଲାଞ୍ଜକୁ ଶତ୍ରୁ ଦେହରେ ଭୁଷି ଦେଇ ସେମାନେ ତାର ମାଂସ ବାହାର କରି ଦିଅନ୍ତି । ରଙ୍ଗ ପରିବର୍ତ୍ତନ କରୁଥିବା ଝିଟିପିଟି ବିଷୟରେ ସମ୍ଭବତଃ ସମସ୍ତେ ଜାଣିଥିବେ । ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଏମାନେ ରଙ୍ଗ ବଦଳାଇ ଥାଆନ୍ତି ।

ଅଲସୁଆ କଇଁଛ ଓ ଭୟଙ୍କର କୁମ୍ଭୀର ବି ଏହି ବିଶାଳ ସରୀସୃପ ପରିବାରର ଜଣେ ଜଣେ ସଦସ୍ୟ । ଏମାନଙ୍କ ଦେହ କଠିନ ଚର୍ମଦ୍ୱାରା ଆବୃତ ରହିଥାଏ । ଏହି କଠିନ ଚର୍ମ ମଧ୍ୟରେ ଛୁରୀ ଆ ଖଣ୍ଡା ମଧ୍ୟ ପ୍ରବେଶ କରିପାରେ ନାହିଁ । ଆମେରିକାରେ ଦେଖାଯାଉଥିବା ବିଶାଳ କଇଁଛ ଏତେ ବଡ଼ ଯେ ଜଣେ ତା' ପିଠି ଉପରେ ଆରାମରେ ଗୋଡ଼ ଘଞ୍ଚି ବେଶ୍ ବସି ପାରିବ ।

ଏହି ପୁସ୍ତକରେ ରହସ୍ୟରେ ଭରିଥିବା ସରୀସୃପଙ୍କ କଥା ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ଦାନବ ସରୀସୃପ, ରଙ୍ଗ ବେରଙ୍ଗ ଝିଟିପିଟି ତଥା ଭୟଙ୍କର କୁମ୍ଭୀର ଓ କଇଁଛମାନଙ୍କର ରୋମାଞ୍ଚକାରୀ କଥା ଏଠାରେ ଅତି ସରଳ ଓ ହୃଦୟସ୍ପର୍ଶୀ ଭାବରେ ବର୍ଣ୍ଣନା କରାଯାଇଛି ।

ଏହି ପୁସ୍ତକ ରଚନାର ପ୍ରାରମ୍ଭରେ ମୋର ସ୍ନେହର କନ୍ୟା ଅଲକନନ୍ଦା ଓ ସୁନନ୍ଦା ମୋତେ ପ୍ରେରଣା ଯୋଗାଇଛନ୍ତି । ସେମାନଙ୍କୁ ମୋର ସ୍ନେହ ଜଣାଉଛି । ମୋର ପ୍ରିୟତମା ପତ୍ନୀ ମୀନା ଦାସ ଏହି ପୁସ୍ତକ ରଚନା ପ୍ରୟାସର ପ୍ରତିଟି ପଦକ୍ଷେପରେ ବିଷୟର ପ୍ରାମାଣିକତା ପୁନର୍ବିଚାର ଏବଂ ନବାଗତ ବିଷୟ ବସ୍ତୁର ପୁନର୍ଲିଖନ କରିବାରେ ତାଙ୍କର ପୂର୍ଣ୍ଣ ସହଯୋଗ ମୋତେ ପ୍ରଦାନ କରିଛନ୍ତି । ତାଙ୍କୁ ମୋର କୃତଜ୍ଞତା ସ୍ନେହ ଜଣାଉଛି ।

ଆଶା ପାଠକଗଣ ଏହି ପ୍ରୟାସକୁ ସ୍ୱାଗତ କରିବେ ।

**ଶିବତୋଷ ଦାସ**

# ଭୂମିକା

ଏହି ପୃଥିବୀରେ ପ୍ରତ୍ୟେକ ଜୀବଙ୍କ ବିକାଶ ସ୍ୱାଭାବିକ । ଏହାର ଫଳ ସ୍ୱରୂପ ସଂସାରରେ ବିଭିନ୍ନ ପ୍ରକାରର ଜୀବଜନ୍ତୁ, ବୃକ୍ଷଲତା ଆଦି ବହୁ ସଂଖ୍ୟାରେ ଦେଖିବାକୁ ମିଳନ୍ତି । ଏବେ ବି ପୃଥିବୀର କୌଣସି କୌଣସି ସ୍ଥାନ ଖନନ କଲେ ବିଭିନ୍ନ ଆକୃତିର ଅସ୍ଥି କିମ୍ବା ଭୂଗର୍ଭ ସ୍ତରରୁ ବାହାରି ଥିବା ଆଦି ଜୀବଜନ୍ତୁଙ୍କ ଫସିଲ ଦେଖିବାକୁ ମିଳେ । ସମୟ ସମୟରେ କୌଣସି କୌଣସି ପ୍ରାଚୀନ ଜୀବଙ୍କ ଅସ୍ଥିର କିଛି ଅଂଶ କିମ୍ବା ସମ୍ପୂର୍ଣ୍ଣ କଙ୍କାଳ ବି ମିଳିଯାଏ । କେତେକ ସ୍ଥାନରେ ଏ କଙ୍କାଳ ପ୍ରସ୍ତରୀଭୂତ ହୋଇ ଯାଇଥାନ୍ତି । ପୁଣି ଆଜି କେତେକ ସ୍ଥାନରେ କଙ୍କାଳ ଗୁଡ଼ିକ ଅକ୍ଷୁର୍ଣ୍ଣ ଅବସ୍ଥାରେ ଦେଖିବାକୁ ମିଳେ । ସେହି ସବୁକୁ ପ୍ରାଚୀନ ଜୀବଜନ୍ତୁ ଓ ବୃକ୍ଷଲତାଙ୍କ ଫସିଲ ବୋଲି କୁହାଯାଏ । ଏମାନେ ପ୍ରାଚୀନ ଇତିହାସର ସାକ୍ଷୀ ହୋଇ ଆମକୁ ଆଦି ଯୁଗର କାହାଣୀ ବର୍ଣ୍ଣନା କରୁଛନ୍ତି ।

ସମୟ ସମୟରେ ଭୂଗର୍ଭରୁ ମିଳିଥିବା ଜୀବଙ୍କ ଫସିଲ ଓ ଅସ୍ଥି ଏତେ ବଡ଼ ଲମ୍ବା ହୋଇଥାଏ ଯେ ମନେ ହୁଏ ଦାନବଙ୍କ ଆକୃତିଠାରୁ ଏମାନଙ୍କ ଆକୃତି କୌଣସି ଗୁଣରେ କମ୍ ନୁହେଁ । ବୈଜ୍ଞାନିକମାନଙ୍କ ମତରେ ଏହି ଫସିଲ ଅତି ପ୍ରାଚୀନ ଯୁଗର ଜୀବଜନ୍ତୁଙ୍କ ଫସିଲ ଅଟେ । ଫସିଲ ସହିତ ଶହ ଶହ ପ୍ରାଚୀନ ଅସ୍ଥି ମଧ୍ୟ ବର୍ତ୍ତମାନ ମିଳୁଛି । ବୈଜ୍ଞାନିକ-ଗଣ ଏହି ଅସ୍ଥିର ବିଭିନ୍ନ ଅଂଶକୁ ଠିକ୍ ଠିକ୍ ଭାବରେ ସଂଯୁକ୍ତ କରି ସମ୍ପୂର୍ଣ୍ଣ ରୂପ ପ୍ରଦାନ କରିଥାନ୍ତି । ଏହି ଫସିଲ ଓ ଅସ୍ଥି ସବୁ ସେମାନଙ୍କର ଶେଷ ରୂପ ଧରି ଆମକୁ ସେମାନଙ୍କର ଆଦି କଥା ଶୁଣାଉଛନ୍ତି ।

ଭୂପୃଷ୍ଠର ବିଭିନ୍ନ ସ୍ଥାନ ଖନନ କରିବା ଦ୍ୱାରା କେଉଁଠି ପଚାଶ ଫୁଟରୁ ଶହେ ଫୁଟ ପର୍ଯ୍ୟନ୍ତ ଲମ୍ବ ଅସ୍ଥି ମିଳୁଛି ତ କେଉଁଠି ଦାନବାକାର ଜୀବଙ୍କ ବିରାଟ ମସ୍ତକ ବାହାରୁଛି । ଏହିପରି କେତେକ ଦେହାବଶେଷ ଭିତରେ ପ୍ରାଚୀନ ଯୁଗର ବିଶାଳକାୟ ସରୀସୃପ ଜାତୀୟ ଜୀବଙ୍କ ଫସିଲ ମଧ୍ୟ ରହିଛି । ଏହି ଦାନବାକାର ଜୀବଙ୍କ ତୁଳନାରେ ଆଜିର ମଣିଷ ମୂଷାପରି ଜଣାପଡ଼େ । ଏମାନଙ୍କ ମସ୍ତିଷ୍କ ଅତ୍ୟନ୍ତ କ୍ଷୁଦ୍ର ହୋଇଥିବ ବୋଲି ବିଶ୍ୱାସ କରାଯାଏ । ଏହି କାରଣ ହେତୁ ସମ୍ଭବତଃ ନିଜର ରକ୍ଷା ପାଇଁ ସେ ତାର ଅଳ୍ପ ବୁଦ୍ଧିକୁ ପ୍ରୟୋଗ କରି ପାରୁନଥିଲା । ହୁଏତ ସେହି କାରଣ ଯୋଗୁଁ ହିଁ ଏହି ବିଶାଳକାୟ ଦାନବ ତା'ଠାରୁ ଅଧିକ ଚତୁର ଶତ୍ରୁ ଦ୍ୱାରା ଜୀବନସଂଗ୍ରାମରେ ପରାସ୍ତ ହୋଇ ଏହି ପୃଥିବୀରୁ ଶୀଘ୍ର ବିଲୁପ୍ତ ହୋଇଗଲା । ଆଜି କେବଳ ମାତ୍ର ତାଙ୍କର ଏହି ଅସ୍ଥି କଙ୍କାଳ ତାଙ୍କର କାହାଣୀ କହିବା ପାଇଁ ରହି ଯାଇଛନ୍ତି । ଆଜି ଏହି ଭୂଗର୍ଭରେ ଥିବା ଦେହାବଶେଷମାନେ ହିଁ କେବଳ ପ୍ରାଚୀନ ଜୀବଜନ୍ତୁ, ମନୁଷ୍ୟ ଓ ବୃକ୍ଷଲତାଙ୍କ ଇତିହାସର ମୂକ ସାକ୍ଷୀ ହୋଇ ରହିଛନ୍ତି ।

ଅତି ପ୍ରାଚୀନ କାଳରେ ଜୀବଜନ୍ତୁ ସବୁ ମରିଯିବା ପରେ ସେମାନଙ୍କର ଅସ୍ଥି ଓ କଙ୍କାଳ ମାଟିତଳେ କିମ୍ବା କୌଣସି ଜଳାଶୟ, ହ୍ରଦ, ନଦୀ ବା ସମୁଦ୍ର ଗର୍ଭରେ ନିମଗ୍ନ ହୋଇଗଲା । ଯୁଗ ଯୁଗାନ୍ତର ଜଳବାୟୁ ପରିବର୍ତ୍ତନ ତଥା ଭୂଗର୍ଭର ଚାପ ହେତୁ ଶତ ଶତ ବର୍ଷ ପରେ ଏହି ଅସ୍ଥି ସବୁ ପଥର ପରି କଠିନ ହୋଇଯାଇଛି । ଏହିପରି ଭାବରେ ଏହି ଅସ୍ଥି ଶିଳାବଶେଷର ରୂପ ଧାରଣ କରିଛି । ପ୍ରାଣୀବିଜ୍ଞାନୀମାନେ ଶିଳାବଶେଷର ସହାୟତାରେ ଶତ ଶତ ବର୍ଷ ପୂର୍ବର ପ୍ରାଚୀନ ତଥା ଲୁପ୍ତ ପ୍ରାଣୀଙ୍କର ଇତିହାସ ଜାଣି ପାରିଛନ୍ତି ।

# ସୂଚୀ

# ଆଦି ଦାନବ ସରୀସୃପ

ସରୀସୃପଙ୍କ ଶରୀରାବଶେଷରୁ ଜଣାଯାଏ ଯେ ସେମାନେ ସମ୍ପୂର୍ଣ୍ଣ ସ୍ତନ୍ୟପାୟୀ ଜୀବ ତଥା ପକ୍ଷୀମାନଙ୍କର ପୂର୍ବଜ 'ଟୂଆଟୋରା' ସଦୃଶ ଥିଲେ । ଏହି ଜୀବମାନଙ୍କର ବିକାଶର ଏକ ଚିତ୍ର ଯଦି ଆମେ ଆଙ୍କୁ ତାହାହେଲେ ଜଣାଯିବ ଯେପରି ସେମାନେ ଏକ କଳ୍ପିତ ଜୀବରୁ ଉତ୍ପନ୍ନ ହୋଇଛନ୍ତି । ବୈଜ୍ଞାନିକଗଣ କହନ୍ତି ଯେ, ଏହି ଜୀବର ଟୂଆଟୋରା' ସହିତ ବହୁତ ସାମଞ୍ଜସ୍ୟ ରହିଛି । ଏହି ଜୀବମାନଙ୍କ କ୍ରମବିକାଶ ସମ୍ବନ୍ଧରେ ସଠିକ ଜାଣିବାକୁ ହେଲେ ପ୍ରାଚୀନ ଯୁଗର ଜୀବଙ୍କ ବିଷୟରେ ବିସ୍ତୃତ ଜ୍ଞାନ ଲାଭ କରିବା ଆବଶ୍ୟକ ।

ମିଳିଥିବା ଦେହାବଶେଷ ଅନୁଯାୟୀ ସରୀସୃପକୁ ଛ' ଶ୍ରେଣୀରେ ବିଭକ୍ତ କରାଯାଇଛି । ସେମାନେ ହେଲେ :—

1—ଖାଲଦଂଶୀ ସରୀସୃପ (ସ୍ଫେନୋଡ଼ନ ଆଦିମ)
2—ଦାନବ ସରୀସୃପ (ଡ଼ାଇନୋ ସୋରିଆ)
3—ପକ୍ଷୀ ସରୀସୃପ (ଟେରା ସୋରିଆ)
4—ମତ୍ସ୍ୟାକାର ସରୀସୃପ (ଇକ୍‌ଥ୍ୟୋ ସୋରିଆ)
5—ଗୋଧିକା ସରୀସୃପ (ପ୍ରସିପ୍ୟୋ ସୋରିଆ)
6—ବିଷମ ଦନ୍ତୀ ସରୀସୃପ (ଏନୋମୋଡ଼େନ୍‌ଶୀୟା)

## ସ୍ଫେନୋଡ଼ନ ବା ଟୂଆଟୋରା

ନ୍ୟୁଜିଲାଣ୍ଡ ନିବାସୀ ମାଓରୀମାନେ ସର୍ପକୁ ଟୂଆଟୋରା ଟୂଟାରିଟ ବା ଟୂଆଟୋରା ବୋଲି କହନ୍ତି । ସେମାନଙ୍କ ଭାଷାରେ ଏହି ଶବ୍ଦର ଅର୍ଥ କଣ୍ଟାଯୁକ୍ତ ସରୀସୃପ ଅଟେ । ପ୍ରାଚୀନ ଯୁଗରେ ନ୍ୟୁଜିଲାଣ୍ଡ ଦ୍ୱୀପରେ ଏହି ପ୍ରକାର ଜୀବ ରହୁଥିଲେ । କିନ୍ତୁ ବର୍ତ୍ତମାନ ସେମାନଙ୍କୁ କେତେକ ଉତ୍ତରାଞ୍ଚଳୀୟ ଦ୍ୱୀପରେହିଁ ଦେଖିବାକୁ ମିଳୁଛି । ବଣୁଆ ଘୁଷୁରି, କୁକୁର ତଥା ବିଲେଇ ଏମାନଙ୍କ ଶତ୍ରୁ ଅଟନ୍ତି ଏବଂ ମାଓରୀ ଜାତିର ଲୋକମାନେ ଏମାନଙ୍କୁ ଧରି ଖାଇ ଯାଆନ୍ତି । ଏମାନେ ଗାତ ତିଆରି କରି ନିକଟରେ ଥିବା ଆବଡ଼ା ଖାବଡ଼ା ସ୍ଥାନରେ ରହି ଥାଆନ୍ତି । କୌଣସି ପ୍ରକାର ଶବ୍ଦର ଆଭାସ ପାଇଲେ ସେମାନେ ତତ୍‌କ୍ଷଣାତ୍ ନିଜର ଗାତରେ ପଶି ଯାଆନ୍ତି । ଏମାନେ ଦିନସାରା ଶୁଅନ୍ତି । ପାଣି ଭିତରେ ଶୋଇବାକୁ ଏମାନେ ବେଶି ପସନ୍ଦ କରନ୍ତି । ପାଣି ଭିତରେ ଏମାନେ ଘଣ୍ଟାଏ ପର୍ଯ୍ୟନ୍ତ ବିନା ନିଶ୍ୱାସରେ

ଆଗମରେ ରହିପାରନ୍ତି । ଏମାନେ ମାଂସାହାରୀ ଜୀବ । ଛୋଟ ଛୋଟ ମାଛ, କଅା ଓ କୀଟ ପ୍ରଭୃତ ଖାଆନ୍ତି । ଏହା ସମୁଦ୍ର କୂଳରେ ଥିବା ଟୁଆଟୋରା କଙ୍କଡ଼ା ଜାତୀୟ ଜୀବଙ୍କୁ ମଧ୍ୟ ଖାଆନ୍ତି । ଯଦ୍ୟପି ଏମାନଙ୍କ ବାହ୍ୟ ଆକୃତି ଝିଟିପିଟି ପରି ଦେଖିବାକୁ ତଥାପି ଏମାନେ ଝିଟିପିଟି ଶ୍ରେଣୀର ନୁହନ୍ତି । ସାପ ସହିତ ଝିଟିପିଟିର ଯେପରି ପାର୍ଥକ୍ୟ ଅଛି ଝିଟିପିଟି ସହିତ ଏ ପ୍ରଭେଦ ସେହିପରି, ଏମାନଙ୍କର ଆକାର ପ୍ରକାର ତଥା ବିକାଶ ସମ୍ବନ୍ଧରେ ସଠିକ ଜାଣିବାକୁ ହେଲେ ଏହା ମନେ ରଖିବା ଆବଶ୍ୟକ ।

ଟୁଆଟୋରା ତାର ଗାତ ଖୋଳିବା ସମୟରେ 'ପେଟ୍ରିଲ' ନାମକ ଏକ ସାମୁଦ୍ରିକ ପକ୍ଷୀର ସାହାଯ୍ୟ ନିଏ ଏବଂ ଦୁହେଁ ଏକା ସାଙ୍ଗରେ ସେହି ଗାତରେ ବାସ କରନ୍ତି । ଏହି ଗାତର ବ୍ୟାସ ଦଶ ବାର ସେଣ୍ଟିମିଟର ହୋଇଥାଏ । ଗାତର ଦ୍ୱାରଠାରୁ 60ରୁ 90 ସେ.ମି: ଭିତରକୁ ଏକ ବଡ଼ କୋଠରୀ ଥାଏ ଯାହାର ଲମ୍ବ 2 ମିଟର ଏବଂ ଉଚ୍ଚତା 30 ରୁ 70 ସେ.ମି: । ଏହି କୋଠରୀ ଘାସ ଓ ପତ୍ରଦ୍ୱାରା ଆଚ୍ଛାଦିତ ହୋଇଥାଏ । ଦ୍ୱାରଠାରୁ ଏହି ବଡ଼ କୋଠରୀକୁ ଯିବାପାଇଁ ପ୍ରଥମେ ତଳକୁ ଓହ୍ଲାଇ ପରେ ଉପରକୁ ଚଢ଼ିବାକୁ ହୁଏ । ଏହି ବଡ଼ କୋଠରୀର ବାମ ପଟରେ ସାଧାରଣତଃ ସାମୁଦ୍ରିକ ପକ୍ଷୀ ପେଟ୍ରିଲ ଥାଏ ଓ ଡ଼ାହାଣ ପଟରେ ଥାଏ ଟୁଆଟୋରା ।

ଗୋଟିଏ ଟୁଆଟୋରା ଅନ୍ୟ ଟୁଆଟୋରାକୁ ନିଜର ଗାତ ଭିତରକୁ ଆସିବାକୁ ଦିଏନାହିଁ । ଯଦି କେହି ତା' ଗାତ ଭିତରକୁ ହାତ ଦିଏ ତେବେ ସେ ବହୁତ ଜୋରରେ ତାକୁ କାମୁଡ଼ି ଦିଏ । ଯୁବା ଟୁଆଟୋରାର ଦୁଇ ମାଢ଼ି ଓ ତାଳୁରେ ମଧ୍ୟ ଦାନ୍ତ ଥାଏ । କିନ୍ତୁ କ୍ରମଶଃ ତାର ଆୟୁ ବଢ଼ିବା ସଙ୍ଗେ ସଙ୍ଗେ ଦାନ୍ତ ସବୁ ପଡ଼ିଯାଏ ଏବଂ ଶେଷରେ ସେ ଦାନ୍ତହୀନ ହୋଇଯାଏ । ସେ ଖୁବ୍ କ୍ଷିପ୍ର ଗତିରେ ଦୌଡ଼ିପାରେ । ତାକୁ ଅନୁସରଣ କରୁଥିବା ମଣିଷ ଓ କୁକୁରକୁ ସେ ଖୁବ୍ ଜୋରରେ କାମୁଡ଼ି ଦିଏ । ରାତିରେ ସେ ବାରମ୍ବାର ଏକ ପ୍ରକାର କର୍କଶ ଶବ୍ଦ କରୁଥାଏ ।

ଟୁଆଟୋରା ନଭେମ୍ବରରୁ ଫେବୃୟାରୀ ଭିତରେ ବାଲୁକାମୟ ଗାତ ଭିତରେ ପ୍ରାୟ ଦଶଟି କଠିନ ଆବରଣ ଯୁକ୍ତ ଅଣ୍ଡା ଦିଏ ଯାହାକି ସୂର୍ଯ୍ୟ ତାପରେ ଉତପ୍ତ ହୁଏ । ଅଗଷ୍ଟ ମାସରେ ଅଣ୍ଡା ଭିତରେ ଥିବା ଛୁଆ ଯଥେଷ୍ଟ ବଡ଼ ହୋଇଯାଏ । ତେର ମାସ ହୋଇଯିବା ପରେ ଛୁଆମାନେ ଅଣ୍ଡାକୁ ଫୁଟାଇ ବାହାରେ ଚଲାବୁଲା କରନ୍ତି ।

ଷାଠିଏ ବର୍ଷ ପୂର୍ବେ ଟୁଆଟୋରା ପନ୍ଦର ଟଙ୍କାରୁ ପଚିଶି ଟଙ୍କା ଭିତରେ କିଣିବାକୁ ମିଳୁଥିଲା । 1914 ମସିହାରେ ଏହା ଦୁଇଶହ ପଚିଶି ଟଙ୍କାରେ ବିକ୍ରି ହୋଇଥିଲା । କିନ୍ତୁ ବର୍ତ୍ତମାନ କେବଳ ନିଉଜିଲାଣ୍ଡ ସରକାର ଛଡ଼ା ଆଉ କେହି ଏ କାମ କରି ପାରିବେ ନାହିଁ ।

ଟୁଆଟୋରା ପ୍ରାୟ ଏକ ମିଟର ହୋଇଥାଏ। ଏହାର ଲାଞ୍ଜ ଲମ୍ବା ଓ ଚେପ୍‌ଟା ଅଟେ। ଏହାର ସମଗ୍ର ଦେହ ଲୋମରେ ଆବୃତ ଓ ମୁଣ୍ଡଆ କଣ୍ଟା ପରି ଉପରକୁ ଉଠିଥାଏ। ଏହା ଚାରି ପାଦରେ ଚାଲେ। ପ୍ରତି ପାଦରେ ପାଞ୍ଚଟି ଲେଖାଏଁ ଆଙ୍ଗୁଠି ଥାଏ। ଏହାର ପାଦର ଆଙ୍ଗୁଳି ଗୁଡ଼ିକ ପରସ୍ପର ସହିତ ପତଳା ଚମଡ଼ା ଦ୍ୱାରା ସଂଯୁକ୍ତ। ଅଙ୍ଗୁଳିରେ ବହୁତ ବଡ଼ ବଡ଼ ନଖଥାଏ। ଏମାନେ ବେଙ୍ଗ ପରି ଉଭୟଚର ଜୀବ ଭାବରେ ଲକ୍ଷ ଲକ୍ଷ ବର୍ଷ ଧରି ଏହିପରି ରହି ଆସୁଛନ୍ତି।

ବୈଜ୍ଞାନିକମାନେ ଏହି ଜୀବର ମୁଣ୍ଡର ମଝିରେ ଏକ ତୃତୀୟ ନେତ୍ର ରହିବାର ଚିହ୍ନ ପାଇଛନ୍ତି। ବୈଜ୍ଞାନିକଗଣଙ୍କ ମତରେ ପ୍ରାଚୀନ କାଳରେ ଏହି ଜୀବମାନେ ତିନୋଟି ଆଖିରେ ଦେଖୁଥିଲେ କିନ୍ତୁ କାଳକ୍ରମେ ପ୍ରକୃତି ଧୀରେ ଧୀରେ ଏହି ତୃତୀୟ ନୟନକୁ ବନ୍ଦ କରି ଦେଇଛି। ଏହି ବିଷୟକୁ ନେଇ ଆଧୁନିକ ଜୀବ-ବୈଜ୍ଞାନିକମାନେ ପୁଙ୍ଖାନୁପୁଙ୍ଖ ଭାବରେ ଗବେଷଣା କରୁଛନ୍ତି। ବର୍ତ୍ତମାନ କେବଳ ଟୁଆଟୋରା ଏକାକୀ ଏହି ଜାତିର ପ୍ରତିନିଧିତ୍ୱ କରୁଛନ୍ତି। କିନ୍ତୁ ବୈଜ୍ଞାନିକମାନେ କହନ୍ତି ଆଜି ଆମେ ଯେଉଁ ହଜାର ସର୍ପ ଦେଖୁଛେ ସେସବୁ ଟୁଆଟୋରା ପୂର୍ବଜ ଅଟନ୍ତି। ସମ୍ଭବତଃ ସବୁ ଶ୍ରେଣୀର ଝିଟିପିଟିଙ୍କ ବିକାଶ ବା କ୍ରମୋନ୍ନତି ଏହି ଟୁଆଟୋରାଠୁ ଆରମ୍ଭ ହୋଇଛି। ମରୁଭୂମିର ବାଲୁକାମୟ ପ୍ରାନ୍ତରରେ କିମ୍ବା ପାହାଡ଼ର ପଟାଣରେ ରହୁଥିବା ଝିଟିପିଟିଠୁଁ ଆରମ୍ଭକରି ପୁଚ୍ଛ ଥିବା ଝିଟିପିଟି, ବୃକ୍ଷବାସୀ ଝିଟିପିଟି ଏବଂ ସେମାନଙ୍କ ପୂର୍ବଜଙ୍କ ସାମଞ୍ଜସ୍ୟ ଓ ବିଭିନ୍ନତାକୁ ଅନୁମାନ କରାଯାଇ। ଆମ ଘରର ଛାତ ଉପରେ ଚଳବୁଲ କରୁଥିବା ତଥା ପାଣିରେ ପହଁରୁଥିବା ଏବଂ ପକ୍ଷୀ ପରି ଗଛ ଡାଳରେ ଉଡ଼ି ବୁଲୁଥିବା ଝିଟିପିଟିମାନଙ୍କୁ ବିଚାର କରାଯାଉ। ପାଦହୀନ ଝିଟିପିଟି ଯେଉଁମାନେ ସାପପରି ଚାଲନ୍ତି ସେମାନଙ୍କ ସହିତ ପୂର୍ବୋକ୍ତ ଝିଟିପିଟିମାନଙ୍କୁ ତୁଳନା କରାଯାଉ। ଏଥିରୁ ଆମେ କଳ୍ପନା ଚକ୍ଷୁରେ ଘରର ଛାତ ଉପରେ ତଥା କାନ୍ଥ ଉପରେ ଚାଲୁଥିବା ଝିଟିପିଟିମାନଙ୍କ ପୂର୍ବପୁରୁଷଙ୍କୁ ଦର୍ଶନ କରିପାରିବୁ।

**ଦାନବ ସରୀସୃପ**—ପୁରାତନ ଯୁଗର ଟୁଆଟେରା ଜାତୀୟ ଶରୀରାବଶେଷ ସହିତ ସେହି ଯୁଗର ଏହି ବିଶାଳକାୟ ସରୀସୃପଙ୍କ ନିଦର୍ଶନ ବି ମିଳିଛି। ଏମାନଙ୍କର ଶରୀରାବଶେଷ ଇଉରୋପ, ଏସିଆ, ଦକ୍ଷିଣ ଆଫ୍ରିକା, ମାଡ଼ାଗାସ୍କାର, ଉତ୍ତର ତଥା ଦକ୍ଷିଣ ଆମେରିକା ଏବଂ ଅଷ୍ଟ୍ରେଲିଆରେ ଦେଖିବାକୁ ମିଳେ। ଏହି ଶରୀରାବଶେଷ ଦେଖି ଅନୁମାନ କରାଯାଏ ଯେ ଏମାନେ ମଧ୍ୟ ଜଳ ତଥା ସ୍ଥଳରେ ଥିଲେ। ଏମାନଙ୍କ ଲାଞ୍ଜ ବହୁତ ଲମ୍ବା ଥିବାରୁ ପାଣିରେ ପହଁରିବାକୁ ଏହା ବହୁତ ସାହାଯ୍ୟ କରୁଥିଲା। ସମ୍ଭବତଃ ଏମାନେ ପଙ୍କରେ ଓ ସ୍ଥଳଭାଗରେ ରହୁଥିଲେ।

ଏମାନଙ୍କ ଦେହର ବିସ୍ତାର ଅସାଧାରଣ ଥିଲେ ମଧ୍ୟ ମୁଣ୍ଡଟି ଛୋଟ ଥିଲା । ଏମାନଙ୍କର ବହୁତ ଉପଜାତି ଥିଲେ । ସେମାନଙ୍କ ମଧ୍ୟରୁ ଆଟଲାଣ୍ଟୋସୋରସ, ଇଗୁଆନୋଡନ ଓ ଷ୍ଟେଗୋସୋରସ ମୁଖ୍ୟ ଅଟେ । ବୈଜ୍ଞାନିକମାନେ କହନ୍ତି ଯେ ଆଟଲାଣ୍ଟୋସୋରସ ସରୀସୃପର ଶରୀର ପ୍ରାୟ 4.5 ମିଟର ଲମ୍ବା ଥିଲା । ଏହାର ବେକ ବହୁତ ଲମ୍ବା ଓ ମୋଟା ଥିଲା । କିନ୍ତୁ ଏହାର ମୁଣ୍ଡ ଶରୀରର ଅନ୍ୟ ଅଂଶ ତୁଳନାରେ ବହୁତ ଛୋଟ ଥିଲା । ଏହାର ଲାଞ୍ଜ ବେକଠୁଁ ଅଧିକ ଲମ୍ବ ଥିଲା ଏବଂ ଚାରି ଗୋଡ଼ର ପଂଝା ହାତୀ ଗୋଡ଼ ପରି ବହୁତ ମୋଟା ଥିଲା । ଏଥିପାଇଁ ସେ ଶୀଘ୍ର ଚାଲିପାରୁ ନ ଥିଲା । ଏହାର କେତେକ ସାଥୀ ପ୍ରାୟ 18 ମିଟର ପର୍ଯ୍ୟନ୍ତ ଲମ୍ବା ଥିଲେ ଏବଂ ଗାଈ ଓ ବଳଦ ପରି ଘାସପତ୍ର ଇତ୍ୟାଦି ଖାଇ ରହୁଥିଲେ ।

ଇଗୁଆନୋଡନ ଆଟଲାଣ୍ଟୋସୋରସ ଠାରୁ ଛୋଟ ଥିଲେ । ଏମାନଙ୍କ ମୁଣ୍ଡ ବହୁତ ବଡ଼ ଥିଲା ଏବଂ ପଛଗୋଡ଼ ଆଗ ଗୋଡ଼ ଅପେକ୍ଷା ବଡ଼ ଓ ବହୁତ ମଜଭୁତ ଥିଲା । ଏମାନଙ୍କ ଆଗ ଗୋଡ଼ ଛୋଟ ଛୋଟ ଥିଲା ଓ ଏହି ପାଦ ସାହାଯ୍ୟରେ ପଛଗୋଡ଼ ଉପରେ ଭର ଦେଇ ସେ ଡେଇଁ ପାରୁଥିଲା । ଏମାନଙ୍କର ଆଙ୍ଗୁଠିଗୁଡ଼ିକ ଖୋଲା ଥିଲା । ଏହାର ସାହାଯ୍ୟରେ ସେ ବୃକ୍ଷର ଡାଳକୁ ଧରି ଛିଡ଼ା ହୋଇ ପାରୁଥିଲା । ଏମାନଙ୍କ ଲାଞ୍ଜ ମୋଟା ଓ ଛୋଟ ଥିଲା । ଏମାନେ ମଧ୍ୟ ଘାସ ପତ୍ର ଖାଉଥିଲେ ।

ଷ୍ଟେଗୋସୋରସ ଅତି ବିଚିତ୍ର ଜୀବ ଥିଲା । ଏହାର ପିଠି ଚମଡ଼ା ଦ୍ୱାରା ଆବୃତ ହୋଇଥିଲା ଏବଂ ଏହି ଚମଡ଼ା ତାର ପିଠି ଉପରେ ଅସମାନ ହାଡ଼ ଭଳି ଉପରକୁ ଉଠି ରହିଥିଲା । ଏମାନେ ପ୍ରାୟ ଦୁଇମିଟର ପର୍ଯ୍ୟନ୍ତ ଲମ୍ବା ଥିଲେ । କିନ୍ତୁ ଏମାନଙ୍କ ବେକ ଓ ଆଗ ଗୋଡ଼ ପ୍ରଥମ ଜାତିର ଦାନବ ସରୀସୃପ ଠାରୁ ଛୋଟ ଥିଲା । ଏମାନଙ୍କ ମୁଣ୍ଡ ବହୁତ ଛୋଟ ଥିଲା । ଏମାନେ ଏତେ ଛୋଟ ଯେ ଦୂରରୁ ଦେଖିଲେ ତାର ଆଗ୍ରସ ସୁଦ୍ଧା ଜାଣି ହେଉ ନ ଥିଲା । ଏବେ ହାତୀଙ୍କର ଆଖି ତାର ଦେହ ତୁଳନାରେ ଯେତିକି ଛୋଟ ଠିକ୍ ସେହି ପରି ସେ ଯୁଗର ଷ୍ଟେଗୋସୋରସ ମୁଣ୍ଡ ବହୁତ ଛୋଟ ଥିଲା । ଏବେ ଆପଣ କଳ୍ପନା କରି ପାରିବେ ଯେ ଏତିକି ଛୋଟ ମୁଣ୍ଡରେ କେତେ ବୁଦ୍ଧି ଥାଇପାରେ । ଏହି ଜୀବମାନେ ମଧ୍ୟ ଘାସ ଖାଇ ରହୁଥିଲେ ।

**ପକ୍ଷୀ ସରୀସୃପ**—ଉଡ଼ୁଥିବା ସରୀସୃପଙ୍କ ଶରୀରବଶେଷ ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ର ଆମେରିକାରେ ଦେଖିବାକୁ ମିଳିଛି । ଅନୁମାନ କରାଯାଏ ଯେ ଏମାନେ ଉଡ଼ିବା ପାଇଁ ବହୁତ ଯତ୍ନ କରୁଥିଲେ ଏବଂ ସଫଳତା ବି ଲାଭ କରୁଥିଲେ । ସେଥିପାଇଁ ଏମାନଙ୍କ ବାହ୍ୟ ଆକୃତି ସହ ପକ୍ଷୀମାନଙ୍କ ଅଙ୍ଗ ପ୍ରତ୍ୟଙ୍ଗର ବହୁତ ସାମଞ୍ଜସ୍ୟ ଥିଲା । କିନ୍ତୁ ଏମାନଙ୍କର ଡେଣା ନ ଥିଲା ଓ ତାଙ୍କ କଙ୍କାଳର ଆକାର ପକ୍ଷୀମାନଙ୍କର ଅସ୍ଥି ଠାରୁ ଭିନ୍ନ ଥିଲା । ବାହ୍ୟ ଆକୃତିରୁ ଏମାନଙ୍କ ମୁଣ୍ଡ ପକ୍ଷୀମାନଙ୍କ ମୁଣ୍ଡ ପରି ସମାନ ଜଣା ପଡ଼ିଲେ ବି ଏମାନଙ୍କର ଚଞ୍ଚୁ ବଦଳରେ ମୁହଁରେ ବଡ଼ ବଡ଼ ଦାନ୍ତ ଥିଲା । ଏମାନଙ୍କ ବେକ ବହୁତ ଲମ୍ବା ଥିଲା ।

ସେମାନେ ସମସ୍ତେ ପକ୍ଷ ହୀନ ଥିଲେ । ଏମାନଙ୍କ ହାତ ଓ ପାଦର ଗଠନ ବହୁତ ଅଦ୍ଭୁତ ପ୍ରକାରର ଥିଲା । ଏମାନଙ୍କ ହାତର ଚତୁର୍ଥ ଆଙ୍ଗୁଳି ସବୁଠାରୁ ବେଶୀ ଲମ୍ବା ଥିଲା । ବାଦୁଡ଼ିର ଡେଣା ପରି ଏମାନଙ୍କର ହାତ ପିଠିରେ ଚମଡ଼ା ସହିତ ଯୁକ୍ତ ଥିଲା । ଏହି ଚମଡ଼ା ସାହାଯ୍ୟରେ ଅଳ୍ପ ବହୁତ ଉଡ଼ି ପାରୁଥିଲେ । ଏହାର ଲାଞ୍ଜ ମଧ୍ୟ ବହୁତ ଲମ୍ବା ଥିଲା ଓ ମୁଣ୍ଡଆଡ଼ୁ ଚଉଡ଼ା ହୋଇ ଲମ୍ବି ଯାଇଥିଲା । ଏହାର ପଛ ଗୋଡ଼ର ହାଡ଼ ଲାଞ୍ଜ ସହିତ ସଂଯୁକ୍ତ ରହିଥିବା ହେତୁ ଉଡ଼ିବା ସମୟରେ ଆହୁଲା ପରି କାମ କରୁଥିଲା ।

ପ୍ରାଣୀବିଜ୍ଞାନ ବିଶେଷଜ୍ଞମାନେ ଏହି ଶରୀରବିଶେଷ ସରୀସୃପଙ୍କୁ ପକ୍ଷୀମାନଙ୍କର ପୂର୍ବପୁରୁଷ ବୋଲି ମାନୁଛନ୍ତି । ଏମାନେ କେତେକ ପକ୍ଷୀଙ୍କର ବିକାଶର କାରଣ ବୋଲି କେହି କେହି କହନ୍ତି କିନ୍ତୁ ସମସ୍ତ ଜାତିର ପକ୍ଷୀ ଏମାନଙ୍କଠାରୁ ଉଦ୍ଭବ—ଏହା କହିବା ଠିକ୍ ହେବ ନାହିଁ । ଏହି ବିଷୟ ନେଇ ବୈଜ୍ଞାନିକମାନଙ୍କ ମଧ୍ୟରେ ମତଭେଦ ରହିଛି ।

**ମତ୍ସ୍ୟାକାର ସରୀସୃପ**—ଏହି ସରୀସୃପର ଆକାର ବହୁତ ବଡ଼ ଥିଲା ଓ ଏମାନେ ସମୁଦ୍ରରେହିଁ ରହୁଥିଲେ । ଏମାନଙ୍କର ଶରୀରବିଶେଷ ଇଂଲଣ୍ଡ, କାଲିଫୋର୍ଣ୍ଣିଆ ଓ ଉତ୍ତର ଆମେରିକାର ସ୍ଥଳ ଭାଗରେ ଦେଖିବାକୁ ମିଳେ । ଏମାନଙ୍କ ମଧ୍ୟରୁ କିଛି କିଛି ଇଉରୋପ, ଆଫ୍ରିକା, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ ଓ ଭାରତରେ ମଧ୍ୟ ଦେଖାଯାନ୍ତି । ଏମାନଙ୍କ ମଧ୍ୟରୁ କେତେକ ନଅ ବା ବାର ମିଟର ଲମ୍ବା ଥିଲେ ଓ ଏମାନଙ୍କର ମୁଣ୍ଡ ଓ ଆଖି ବହୁତ ବଡ଼ ଥିଲା । କିନ୍ତୁ ଏମାନଙ୍କ ବେକ ବୋଲି କିଛି ପ୍ରାୟ ନ ଥିଲା । ଏହାର ହାତ, ଗୋଡ଼, ଲାଞ୍ଜ ତଥା ପଛପଟ ଆକାର ପ୍ରକାର ମାଛ ପରି ଥିଲା ଓ ଏମାନେ ସମୁଦ୍ରରେ ଚଳପ୍ରଚଳ ହୋଇ ପାରୁଥିଲେ । କେତେକ ବୈଜ୍ଞାନିକ ଏହାକୁ ପୁରାତନ ଯୁଗର ସାମୁଦ୍ରିକ ତିମି ବୋଲି କହୁଥିଲେ । କିନ୍ତୁ ଏମାନଙ୍କ ଅସ୍ଥିର ଗଠନରୁ ଜଣାଯାଏ ଯେ ଏମାନେ ସରୀସୃପ ପରିବାରର ସଦସ୍ୟ ଅଟନ୍ତି ।

ଟୁଆଟାରା ପରି ଏମାନଙ୍କର ମଧ୍ୟ ତୃତୀୟ ଚକ୍ଷୁ ରହିଥିବାର ପ୍ରମାଣ ମିଳେ । ଏମାନେ ସନ୍ତାନ ଜନ୍ମ ଦେଉଥିଲେ । ଏହାର ପ୍ରମାଣ କେତେକ ଶରୀରବିଶେଷରୁ ଜଣାପଡ଼େ । ସେମାନଙ୍କ ଦେହର ଆଭ୍ୟନ୍ତରରେ ବଡ଼ ବଡ଼ ଛୁଆ ଥିବାର ଚିହ୍ନ ରହିଛି । ବିଭିନ୍ନ ଦେଶରେ ଏମାନଙ୍କ ବିସ୍ତାରରୁ ଜଣାଯାଏ ଯେ ଏମାନେ ସାରା ବିଶ୍ୱରେ ବ୍ୟାପି ରହିଥିଲେ ।

**ଗୋଧି ସରୀସୃପ**— ଯଦିଓ ଏମାନେ ଜଳ ସ୍ଥଳ ଉଭୟରେ ରହୁଥିଲେ ତଥାପି ଯେଉଁଠାରେ ଜଳର ଅଭାବ ଥିଲା ସେଠି ସେମାନେ ରହିପାରୁ ନ ଥିଲେ । ଏମାନଙ୍କ ଶରୀରବିଶେଷ ଇଉରୋପ, ଉତ୍ତର ତଥା ଦକ୍ଷିଣ ଆମେରିକା, ନିଉଜିଲାଣ୍ଡ ଓ ଭାରତରେ ଦେଖିବାକୁ ମିଳେ । ଏମାନଙ୍କ ବାହ୍ୟ ଆକୃତି ବଡ଼ ବିଚିତ୍ର ଥିଲା । ମାଛର ଡେଣାପରି ଏହାର

ଦୁଇ ଯୋଡ଼ା ଚଉଡ଼ା ଚଉଡ଼ା ଆଙ୍ଗୁଳି ପରି ହାତ ଗୋଡ଼ ଥିଲା, ଯାହାର ସାହାଯ୍ୟରେ ସେ ନଦୀ, ପୋଖରୀ ଓ ସମୁଦ୍ରରେ ପହଁରି ପାରୁଥିଲା । ଏହାର ଲାଞ୍ଜ ଛୋଟ ଓ ଚଉଡ଼ା ଥିଲା । ଏହି ଜାତିର କେତେକ ଜୀବଙ୍କର ଲମ୍ବ ପ୍ରାୟ ବାର ମିଟର ପର୍ଯ୍ୟନ୍ତ ଥିଲା କିନ୍ତୁ ଏହାର ବେକ, ହାତ ଓ ପାଦର ଗଠନ ମାଛର ଗଠନଠାରୁ ଭିନ୍ନ ଥିଲା । ଏହାର ବେକ କଇଁଛର ବେକ ପରି ବହୁତ ଲମ୍ବା ଓ ସରୁ ଥିଲା କିନ୍ତୁ ମୁଣ୍ଡ ବହୁତ ଛୋଟ ଥିଲା । ଅନ୍ୟାନ୍ୟ ସରୀସୃପଙ୍କ ଗଠନ ସହିତ ଏମାନଙ୍କ ବେକ ଓ ମୁଣ୍ଡର ଆଭ୍ୟନ୍ତରୀଣ ଗଠନର ଅନେକ ସାମଞ୍ଜସ୍ୟ ଥିଲା । କିନ୍ତୁ ଏମାନେ ମତ୍ସ୍ୟ ଜାତିର ଅନ୍ତର୍ଭୁକ୍ତ ନଥିଲେ । ଏମାନଙ୍କ ହାତ ଓ ପାଦରେ ମନୁଷ୍ୟର ହାତ ଓ ପାଦରେ ଥିବା ହାଡ଼ ଭଳି ଛୋଟ ଛୋଟ ଅନେକ ହାଡ଼ ଦେଖିବାକୁ ମିଳେ । ଏଇଥିରୁ ଅନୁମାନ କରିଯାଏ ଯେ ଏମାନେ ଏହା ପୂର୍ବରୁ ସ୍ଥଳ ଭାଗରେ ରହୁଥିଲେ । କିନ୍ତୁ କେତେକ କାରଣବଶତଃ ଏମାନେ ସ୍ଥଳ ଭାଗ ଛାଡ଼ି ଜଳରେ ବାସ କଲେ । ଏହି ପରିସ୍ଥିତି ହାରି ପରିବର୍ତ୍ତନ ହେଉଥିବା ଜୀବମାନଙ୍କର ଏକ ଉଦାହରଣ ହେଲା ତିମି ମାଛ । ଏହା ସ୍ତନ୍ୟପାୟୀ ଅଟେ । କିନ୍ତୁ ଉପରୁ ଦେଖିଲେ ଜଣାଯାଏ ଯେ ଏହା ଏକ ପ୍ରକାର ଦାନବାକାର ମାଛ । କେଉଁ ପରିସ୍ଥିତି ହେତୁ ଏମାନେ ଧୀରେ ଧୀରେ ସ୍ଥଳ ଭାଗ ଛାଡ଼ି ଜଳରେ ରହିବାକୁ ବାଧ୍ୟ ହେଲେ ତାହା ଜଣାପଡେ ନାହିଁ ।

**ବିଷମ ଦନ୍ତୀ ସରୀସୃପ**—ଏବେ ଆମେ ଯେଉଁ ଶରୀରବିଶେଷ ବିଷୟ ବର୍ଣ୍ଣନା କରିବାକୁ ଯାଉଛୁ ତାହାର ସାପ ଏବଂ ସ୍ତନ୍ୟପାୟୀ ଜୀବ ଉଭୟଙ୍କ ସହ ସଂପର୍କ ରହିଛି । ଜୀବବିଜ୍ଞାନ ଦୃଷ୍ଟିକୋଣରୁ ଏହି ପ୍ରାଣୀ ବହୁତ ଗୁରୁତ୍ୱପୂର୍ଣ୍ଣ ଅଟେ ଏବଂ ଆଧୁନିକ ବୈଜ୍ଞାନିକଙ୍କ ମତରେ ଏହି ସରୀସୃପଠାରୁ ସ୍ତନ୍ୟପାୟୀ ଜୀବଙ୍କର ବିକାଶ ସାଧିତ ହୋଇଥିଲା ।

ଏହି ସରୀସୃପ ସ୍ଥଳଚର ଥିଲା । ଏହାର ଶରୀରବିଶେଷ ଏବେ ମଧ୍ୟ ଇଉରୋପ, ଉତ୍ତର ଆମେରିକା, ଦକ୍ଷିଣ ଆଫ୍ରିକା ଓ ଭାରତରେ ଦେଖିବାକୁ ମିଳୁଛି । ଏମାନଙ୍କ ମୁଣ୍ଡରେ ଥିବା ହାଡ଼ ଦେଖି ଜଣାଯାଏ ଯେ ଏମାନଙ୍କର ମଧ୍ୟ ତୃତୀୟ ନେତ୍ର ଥିଲା । ଏମାନଙ୍କର ମୁଣ୍ଡ, ମାଡ଼ି ଓ ଦେହର ମଧ୍ୟଭାଗର ହାଡ଼ ସହିତ ଜୀବିତ ସରୀସୃପଙ୍କ ବହୁ ସାମଞ୍ଜସ୍ୟ ଅଛି । ଏହାର ସାମଞ୍ଜସ୍ୟ ଝିଟିପିଟିର ଆକାରଧାରୀ ଲମ୍ବ ବେକଥିବା ଗୋଧି ସଙ୍ଗେ ଅଧିକା ମିଳିଯାଏ । ପରନ୍ତୁ ଏହାର ଶରୀରବିଶେଷ ସ୍ତନ୍ୟପାୟୀ ପ୍ରାଣୀଙ୍କର ବିଶେଷତ୍ୱ ମଧ୍ୟ ଦେଖିବାକୁ ମିଳେ । ଏହାର ମୁହଁରେ ମନୁଷ୍ୟ ପରି ଚାରି ପ୍ରକାର ଦାନ୍ତ ଓ ଗାଲରେ ହାଡ଼ ଦେଖିବାକୁ ମିଳେ । ଆଗ ଓ ପଛ ଗୋଡ଼ର ଗଠନ ସ୍ତନ୍ୟପାୟୀ ଜୀବଙ୍କ ପାଦ ପରି ଅଟେ । ସିଂହ ଓ ଚିତାବାଘଙ୍କ ଶାରୀରିକ ଗଠନ ସହିତ ଏମାନଙ୍କର କାନ୍ଧ ଓ ଦେହର ମଧ୍ୟଭାଗ ହାଡ଼ର ସାମଞ୍ଜସ୍ୟ ଅଛି ।

ଦୁଇ ଶ୍ରେଣୀର ଜୀବଙ୍କ ବିଶେଷତ୍ୱ ଏହାର ରହିଛି ବୋଲି ଏହି ସରୀସୃପର ଶରୀରବିଶେଷ ଜଣାଯାଏ । କେଉଁ ଶ୍ରେଣୀର ଜୀବଙ୍କ ବିଶେଷତ୍ୱ ଏମାନଙ୍କ ଭିତରେ ବେଶୀ

ଅଛି ତାହା ସଠିକ ଜାଣି ହେଉ ନାହିଁ । ଅଧିକାଂଶ ବୈଜ୍ଞାନିକ ଏମାନଙ୍କୁ ନା ସରୀସୃପ ଶ୍ରେଣୀରେ ରଖୁଛନ୍ତି ନା ସ୍ତନ୍ୟପାୟୀ ଶ୍ରେଣୀରେ ରଖୁଛନ୍ତି । ଯେତେଦିନ ପର୍ଯ୍ୟନ୍ତ ଏମାନଙ୍କର ସଠିକ ଆକୃତିର ଶରୀରାବଶେଷ ନ ମିଳୁଛି ସେତେଦିନ ପର୍ଯ୍ୟନ୍ତ ଏହି ଜୀବମାନଙ୍କ ବଂଶ ପରିଚୟ, ଏମାନଙ୍କର ସ୍ଥାୟୀତ୍ୱର ସମୟ ଓ ସ୍ଥାନ ବିଷୟରେ ସଠିକ କିଛି କହିବା ସମ୍ଭବ ନୁହେଁ । କିନ୍ତୁ ଏମାନଙ୍କ ବିଶେଷତ୍ୱ ଦେଖି ନିଶ୍ଚିତ ଭାବରେ କୁହାଯାଇପାରେ ଯେ ସ୍ତନ୍ୟପାୟୀ ଜୀବଙ୍କ ପୂର୍ବ ପୁରୁଷ ଏହି ସରୀସୃପମାନଙ୍କ ପରି ଥିଲେ ।

# ସାପଙ୍କ ଜାତି

ପ୍ରତ୍ୟେକ ମଣିଷ ସାପଙ୍କୁ ଅସାଧାରଣ ଦୃଷ୍ଟିରେ ଦେଖନ୍ତି । ଏହି ଜୀବ ଠାରେ ବିଶେଷ ବିଚିତ୍ରତା ଦେଖାଯାଏ । ଏହାର ଶିବ ଓ ଅଶିବ ରୂପ ସଂସାରରେ ଶ୍ରଦ୍ଧା ଓ ଭୟର କାରଣ ହୋଇଛି । କେତେକ ସାପ ସୁନ୍ଦର ଓ ଆଉ କେତେକ ଭୟଙ୍କର ଅଟନ୍ତି । ଏହାର ଚଞ୍ଚଳ ଆଖି, ବିଚିତ୍ର ଗତି, ପ୍ରବଳ ବେଗରେ ଦଂଶନ କରିବାର ଶକ୍ତି ଯୋଗୁଁ ମନୁଷ୍ୟ ଏହାକୁ ଭୟ ଓ ଘୃଣା ଦୃଷ୍ଟିରେ ଦେଖନ୍ତି । ଗ୍ରାମାଞ୍ଚଳରେ ଲୋକମାନେ ସାପକୁ ଯମଦୂତ ବୋଲି ଡାକନ୍ତି । ଅନ୍ଧବିଶ୍ୱାସୀ ଲୋକମାନେ ଏହାକୁ ପୂଜା କରନ୍ତି । ବୈଜ୍ଞାନିକମାନେ ଏହାର ସୌନ୍ଦର୍ଯ୍ୟ ତଥା ତରଙ୍ଗାୟିତ ବକ୍ରଗତି ଦେଖି ପ୍ରଶଂସା ନ କରି ରହି ପାରନ୍ତି ନାହିଁ । ନାଗସାପ କି ସୁନ୍ଦର ଭଙ୍ଗୀରେ ନିଜ ଶରୀରକୁ ସଂକୁଚିତ କରିଦିଏ ପୁଣି ଧୀରେ ଧୀରେ ବିସ୍ତୃତ କରି ପଥର ସନ୍ଧିରେ ଲୁଚିଯାଏ । ଉଜ୍ଜ୍ୱଳ ଆଲୋକରେ ସାପର ଚମଡ଼ା (କାତି) କେତେ ସୁନ୍ଦର ଦେଖାଯାଏ । କେତେକ ସାପର ସୁନ୍ଦର କାନ୍ତି ଆଖିକୁ ମୁଗ୍ଧ କରିଦିଏ ।

ଲୋକମାନଙ୍କ ଧାରଣା ଯେ ସଂସାରରେ ସବୁ ସାପ ବିଷଧର । ବର୍ତ୍ତମାନ ସୁଦ୍ଧା ପୃଥିବୀରେ ପ୍ରାୟ ଅଠରଶହ ପ୍ରକାର ସାପର ସନ୍ଧାନ ମିଳିଛି । ଏହି ଅଠରଶହ ପ୍ରକାର ସାପ ମଧ୍ୟରୁ ପ୍ରାୟ ପନ୍ଦରଶହ ପ୍ରକାର ସାପ ଭାରତବର୍ଷରେ ଦେଖାଯାନ୍ତି । ତା'ମଧ୍ୟରୁ କେବଳ 69 ଜାତିର ସାପ ବିଷଧର ଅଟନ୍ତି । ପୃଥିବୀର ସମୁଦାୟ ସାପ ମଧ୍ୟରୁ ତିନିଶହ ଜାତିର ସାପ ଅଧିକ ବିଷଧର । ସାମୁଦ୍ରିକ ସାପ ସବୁଠାରୁ ବେଶୀ ବିଷଧର ।

ସବୁଠାରୁ ବଡ଼ ସାପ ସାଢ଼େ ଦଶ ମିଟର ପର୍ଯ୍ୟନ୍ତ ଲମ୍ବା ହୁଏ । ଏହା ଭାରତବର୍ଷର ଅଜଗର ସାପ । ଲୋକଙ୍କର ଧାରଣା ଯେ ସାପ ବହୁତ ଦିନ ପର୍ଯ୍ୟନ୍ତ ବଞ୍ଚନ୍ତି କିନ୍ତୁ ଏ ଧାରଣା ଭ୍ରମାତ୍ମକ । କୌଣସି ସାପ 25 ବର୍ଷରୁ ଅଧିକ କାଳ ବଞ୍ଚି ରହି ପାରେନା । ସାମୁଦ୍ରିକ କଚ୍ଛପ ଶହେ ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିବାର ପ୍ରମାଣ ମିଳିଛି । ସାପ ମୂକ ଓ ବଧିର ଅଟେ । ସାପୁଆ କେଳାର ବଂଶୀର ପ୍ରଭାବ ତା' ଉପରେ ପଡ଼େ ନାହିଁ । କିନ୍ତୁ, ମାଟି ଉପରେ ଜୋରରେ ପିଟିଲେ ସେ ଇତସ୍ତତଃ ହୋଇ ପଳାଇଯାଏ । ସବୁ ସାପ ଆନନ୍ଦରେ ପାଣିରେ ପହଁରି ପାରନ୍ତି । ଏମାନେ ସମସ୍ତେ ପ୍ରାୟ ମାଂସହାରୀ ଅଟନ୍ତି । ସାପର ଦେହ ଗୋଲାକାର ହାଡ଼ରେ ତିଆରି ହୋଇଛି । ଏଥିପାଇଁ ସେ ଶୀଘ୍ର ପଳାଇ ଯାଇପାରେ ନାହିଁ । ଏହାର ଗତି ଘଣ୍ଟାକୁ ତିନି ମାଇଲରୁ ଅଧିକ ହୋଇପାରେ ନାହିଁ । କେତେକ ସାପ ଅଣ୍ଡା ନ ଦେଇ

ସିଧାସଳଖ ଛୁଆ ଜନ୍ମ କରନ୍ତି । ସାପ ବିଷରୁ ତିଆରି ଔଷଧ ଟଣ୍ଡି ରୋଗ ପାଇଁ ଅତ୍ୟନ୍ତ ଉପକାରୀ । ବିଷଧର ସାପଙ୍କ ଛୁଆମାନେ ମା' ବାପା ପରି ଅତ୍ୟନ୍ତ ବିଷାକ୍ତ ଅଟନ୍ତି । ସାପ ଖେଳେଇବା ଭାରତବର୍ଷ ତଥା ମିଶରରେ ଆଜି ସୁଦ୍ଧା ଏକ ବ୍ୟବସାୟ ହୋଇରହିଛି । ଏଥିପାଇଁ କୌଣସି କୌଶଳର ଆବଶ୍ୟକତା ହୁଏ ନାହିଁ । ସାପ ଧରିବା ପ୍ରଣାଳୀରୁ ତାର ନାଚିବା ପ୍ରକୃତି ନିର୍ଭର କରେ ।

ଭାରତବର୍ଷରେ ସାପୁଆକେଳାମାନେ ଅଜଗର ସାପର ମୋଟା ଲାଙ୍ଗରେ କଣା କରି ଦୋମୁହାଁ ସାପ ନାମ ଦେଇ ଲୋକଙ୍କ ମନରେ ବିସ୍ମୟ ଉଦ୍ରେକ କରନ୍ତି । ସେମାନେ ଏପରି ବି କହନ୍ତି ଯେ ଦୋମୁହାଁ ସାପ ଗୋଟିଏ ମୁହଁରେ ଛଅମାସ ଏବଂ ଅନ୍ୟ ମୁହଁରେ ଆଉ ଛଅମାସ ଖାଆନ୍ତି ।

ବିଷଧର ସାପଙ୍କ ମୁହଁରେ ଦୁଇଟି ବା ଗୁଡ଼େଇଟି ବିଷ ଦାନ୍ତ ଥାଏ ଓ ଗୋଟିଏ ବିଷଗ୍ରନ୍ଥି ଥାଏ । ସାପ ଦାନ୍ତରେ କାମୁଡ଼ିବା ସମୟରେ ସେଇ ବିଷଗ୍ରନ୍ଥିରୁ ବିଷ ବାହାରି ଦାନ୍ତ ମୂଳକୁ ଚାଲିଆସେ । ସାପ ବିଷୟରେ ଭଲ ଭାବରେ ଅଧ୍ୟୟନ କଲେ ଜଣାଯାଏ ଯେ ଏହି ବିଷଗ୍ରନ୍ଥି ଏକ ଲାଳ ଥଳୀରୁ ଧୀରେ ଧୀରେ ତିଆରି ହୋଇଛି । ବାନ୍ଧନରେ ପଡ଼ିଲେ ସାପ ସାଧାରଣତଃ କିଛି ଖାଏ ନାହିଁ । ସେ କେତେ ମାସ ପର୍ଯ୍ୟନ୍ତ ନ ଖାଇ ରହିପାରେ । ଆଶ୍ଚର୍ଯ୍ୟର କଥା ଯେ ସେ ନ ଖାଇଲେ ମଧ୍ୟ ତାର କିଛି କ୍ଷତି ହୁଏନା । ଆମେରିକାର ଏକ ଚିଡ଼ିଆଖାନାରେ ଏକ ଅଜଗର ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ କିଛି ନ ଖାଇ ରହିଥିଲା । ଶେଷରେ ତାର ମାଲିକ ଜୋର କରି ଗୋଟିଏ ଠେକୁଆ ଓ କେତେକ ମୂଷା ତା' ମୁହଁରେ ପକେଇଦେଇଥିଲେ । ସାଧାରଣତଃ ସାପ ତାର ଶିକାରକୁ ସମ୍ପୂର୍ଣ୍ଣ ଭାବରେ ଗିଳିଦିଏ । ବେଳେ ବେଳେ ତା'ଠାରୁ ବଡ଼ ଜନ୍ତୁକୁ ମଧ୍ୟ ସେ ଗିଳି ଦେଇପାରେ । ସେଥିପାଇଁ ତାର ଖାଦ୍ୟନଳୀ ଓ ପେଟ ବେଲୁନ ପରି ଫୁଲିଯାଏ । ପ୍ରକୃତି ସାପର ମାଢ଼ିର ହାଡ଼କୁ ତନ୍ତୁଦ୍ୱାରା ପରସ୍ପର ସହିତ ବାନ୍ଧି ଦେଇଥାଏ । ଉପର ତଥା ତଳ ମାଢ଼ି ମଧ୍ୟ ଏପରି ବନ୍ଧା ହୋଇଥାଏ । ଏହି ତନ୍ତୁ ସାହାଯ୍ୟରେ ଦୁଇଟି ମାଢ଼ି ବହୁତ ଦୂର ପର୍ଯ୍ୟନ୍ତ ମେଲିଯାଏ ।

ସାପର ହଜମ ଶକ୍ତି ବହୁତ ପ୍ରଖର ଅଟେ । ଏହାର ପାକସ୍ଥଳୀରେ ଥିବା ରସରେ ହାଡ଼, ଦାନ୍ତ ପରି କଠିନ ବସ୍ତୁ ଏକାଥରେ ମିଳେଇ ଯାଏ । ସ୍ତନ୍ୟପାୟୀ ଜୀବଙ୍କ ନଖ ଓ ଜଙ୍ଗଲୀ ଜୀବଙ୍କ ନରମ ଲୋମ ଏହି ରସ ଦ୍ୱାରା ମିଶି ଯାଉନଥିବା ହେତୁ ସେ ସବୁ ବସ୍ତୁ ତା' ପେଟ ଭିତରୁ ବାହାରିଲେ ତାର ଶିକାର କଣ ଥିଲା ତାହା ଜଣାଯାଏ ।

ଆପଣ ପଚାରି ପାରନ୍ତି ଯେ ଯେଉଁ ସମୟରେ ସାପର ମୁହଁ ଶିକାର ଧରି ବେଲୁନ ପରି ଫୁଲିଯାଏ ସେତେବେଳେ ସେ କିପରି ନିଶ୍ୱାସ ନିଏ । ପ୍ରକୃତି ଏହି ସମୟରେ ତାର ଶ୍ୱାସକ୍ରିୟା କାର୍ଯ୍ୟକୁ ସହଜ କରି ନେଇଥାଏ । ଏହିପରି ଅସ୍ୱାଭାବିକ ପରିସ୍ଥିତିରେ ସାପର

ଶ୍ୱାସନଳୀ ଦାନ୍ତର ବାହାରକୁ ଚାଲି ଆସିଥାଏ । ତେଣୁ ବାୟୁ ସିଧା ସଳଖ ତାର ଫୁସ୍‌ଫୁସ୍‌କୁ ଚାଲିଯାଏ ।

ସବୁ ସାପ ଅଣ୍ଡାରୁ ଜନ୍ମ ହୁଅନ୍ତି । କେତେକ ସାପର ପେଟ ଭିତରେ ଅଣ୍ଡା ସବୁ ବଡ ହୋଇଥାଏ ଓ ସେଥିରୁ ଛୁଆ ହୋଇ ବାହାରକୁ ବାହାରି ଆସନ୍ତି । କିନ୍ତୁ ଅଧିକାଂଶ ସ୍ତ୍ରୀ ସାପ ଅଣ୍ଡା ଦିଅନ୍ତି । ଛୁଆ ଅଣ୍ଡାକୁ ଫୁଟାଇ ବାହାରକୁ ଆସେ । ସବୁ ଅଣ୍ଡା ଉପରେ ଏକ ଅଠାଳିଆ ରସ ଥାଏ । ଏହି ରସ ଯୋଗୁଁ ଗୋଟିଏ ଅଣ୍ଡା ଅନ୍ୟ ଅଣ୍ଡା ସହ ଲାଗି ରହିଥାଏ ।

ଅଧିକାଂଶ ସାପ କୌଣସି ଗାତରେ କିମ୍ବା ବାଲି ତଳେ କିମ୍ବା କୌଣସି ଆବର୍ଜନାଯୁକ୍ତ ସ୍ଥାନମାନଙ୍କରେ ଅଣ୍ଡା ଦିଅନ୍ତି । ଏଗୁଡ଼ିକ ଖରା ତାପରେ ପଡ଼ି ରହନ୍ତି । ଏହି ଉତ୍ତାପ ଅଣ୍ଡାକୁ ଉଷୁମେଇବା ପାଇଁ ବହୁତ ସାହାଯ୍ୟ କରେ । କେତେକ ସାପ ନିଜ ଶରୀରକୁ ଗୋଲାକାର କରି ତା' ଭିତରେ ଅଣ୍ଡାକୁ ରଖି ଉତ୍ତାପ ଦିଅନ୍ତି । ଏହି ସମୟରେ ଏପରି ସାପର ଦେହର ତାପମାତ୍ରା ବାହାର ଅପେକ୍ଷା 100 ଡିଗ୍ରୀ ଅଧିକ ଥାଏ । କେତେକ ସାପ ଏକାଥରକେ ଏକଶହରୁ ଅଧିକ ଅଣ୍ଡା ଦିଅନ୍ତି । ଆଉ କେତେକ କେବଳ ମାତ୍ର ଦୁଇଟି ଅଣ୍ଡା ଦିଅନ୍ତି । ଏହି ପ୍ରକାରର କେତେକ ସାପ ଥରକେ ଅଣିଏରୁ ବେଶୀ ଛୁଆ ଦିଏ । ଆଉ କେତେକ ଖୁବ୍ ଅଳ୍ପ ।

ସାଧାରଣତଃ ସାପ ଅଧିକା ଉଷ୍ମ ପ୍ରଦେଶମାନଙ୍କରେ ରହି ଥାଆନ୍ତି । କେତେକ ସାପ ଶୀତ ଦିନକୁ ଛାଡି ବର୍ଷସାରା ବହୁତ ଖୁସିରେ ଥାଆନ୍ତି । ଶୀତ କାଳରେ ଏମାନେ ଗାତ ଭିତରେ ପଶିଯାଇ ଥାଆନ୍ତି । କେବେ କେବେ ଅନେକ ସାପ ଗୋଟିଏ ଗାତ ଭିତରେ ପରସ୍ପରକୁ ଲାଗି ରହିଥାଆନ୍ତି । ଏହି ସମୟରେ ସେମାନେ ଅତ୍ୟନ୍ତ ଦୟାଳୁ ରହିଥାଆନ୍ତି ଓ ଖିଆ ପିଆ ମଧ୍ୟ କରନ୍ତି ନାହିଁ । ଏହି ଅବସ୍ଥାରେ ସେମାନଙ୍କ ପାଚନ କ୍ରିୟା ଓ ରକ୍ତ ସଞ୍ଚାଳନ କ୍ରିୟା ଧୀର ଗତିରେ ହୁଏ । ଅନ୍ୟ ସରୀସୃପ ପରି ତା' ଚମଡ଼ା ଭିତରେ ଜମା ହୋଇଥିବା ଚର୍ବିଦ୍ୱାରା ତାର ଭୋଜନ କ୍ରିୟା ଚାଲେ ।

ଅତ୍ୟନ୍ତ ଦୁଃଖର କଥା ଯେ ଭାରତ ବର୍ଷରେ ପ୍ରତିଦିନ ପ୍ରାୟ ଏକଶହ ଲୋକଙ୍କର ସର୍ପଦଂଶନରେ ମୃତ୍ୟୁ ହୁଏ । ଏତେ ବେଶୀ ମୃତ୍ୟୁ ସଂଖ୍ୟା ଶୁଣି କାହାର ହୃଦୟ ଭୟ ତଥା ଦୁଃଖରେ କମ୍ପି ନ ଉଠିବ ? ଲୋକମାନେ ଯଦି ଏହାର ପ୍ରତିକାର ନ କରନ୍ତି ତେବେ ସେମାନେ ବିଷଧର ସାପକୁ ଅନ୍ତତଃ ମାରିବାରେ ସାହାଯ୍ୟ କରିପାରିବେ । ଆମ୍ଭେମାନେ ଗ୍ରାମବାସୀଙ୍କୁ ବୁଝେଇବା ଉଚିତ ଯେ ସେମାନେ ଯେପରି ନାଗପୂଜା ବନ୍ଦ କରିଦେବେ । କାରଣ ଏହି ପୂଜା କେବଳମାତ୍ର ଅନ୍ଧବିଶ୍ୱାସ । ଏହି ବିଶ୍ୱାସ ହେତୁ ବିଷାକ୍ତ ସାପ ବଞ୍ଚି ପଳାଇ ଯାଆନ୍ତି ।ଅଧିକାଂଶ ଭାରତବାସୀ ଖାଲି ପାଦରେ ଯିବା

ଆସିବା କରନ୍ତ । ସେଥିପାଇଁ ଏଠି ବ ଲୋକମାନେ ଅତ ସହଜରେ ସାପର ଶିକାର ହୋଇଯାଆନ୍ତ ।

ବହୁତ ବଡ଼ ବଡ଼ ଡ଼ାକ୍ତର ତଥା ଦେଶୀ ଚକତ୍ସକ ଇହି ମଧ୍ୟ ନାଗ ଓ କରେଇତ (Krait) ସାପ ଦଂଶନରୁ ମନୁଷ୍ୟ ବଞ୍ଚ ପାରୁନାହିଁ । କେବଳ ମାତ୍ର ବିଷର ଆଧିକ୍ୟ ଉପରେ ବଞ୍ଚିବା ନର୍ଭର କରେ । ଯଦ ବିଷର ପରିମାଣ କମ୍ ଥାଏ ତା'ହେଲେ ସଙ୍ଗେ ସଙ୍ଗେ 'ଆଣ୍ଟିଭେନମ' ଇଞ୍ଜେକସନ ଦେଲେ ମନୁଷ୍ୟ ବଞ୍ଚ ଯାଇପାରେ ।

ଜଣେ ବଖ୍ୟାତ ଜୀବବଜ୍ଞାନୀ କହନ୍ତ ଯେ ବର୍ତ୍ତମାନ ସାପଙ୍କ ସଂଖ୍ୟା ଅଗଣିତ କନ୍ତୁ କ୍ରମେ କ୍ରମେ ତାଙ୍କର ସଂଖ୍ୟା କମି ଆସୁଛି । ମନୁଷ୍ୟଙ୍କୁ ସବୁ ଜୀବ ଭୟ କରନ୍ତ ଏବଂ ତା ସମ୍ମୁଖରୁ ପଳାଇ ଯିବାକୁ ଚେଷ୍ଟା କରନ୍ତ । ଏହି ବୈଜ୍ଞାନକମାନେ ଅନୁମାନ କରନ୍ତ ଯେ ସହସ୍ର ବର୍ଷ ପରେ ଏହି ସାପ ସବୁ ଶିଳାବଶେଷରେ ପରିଣତ ହୋଇଯିବେ ଯେମିତ ଏବେ ଏକଦା ଜୀବତ ଥିବା ବଡ଼ ବଡ଼ ସାମୁଦ୍ରିକ ସାପ ଶିଳାବଶେଷ ଅବସ୍ଥାରେ ମିଳୁଛି ।

**ବିଷଧର ସାପ:**—ଡ଼କ୍ଟର ସି. ଫେଲକ୍ସ ଓ ତାଙ୍କ ସହଧର୍ମିଣୀ ଏକ ପତ୍ରିକାରେ ଲେଖିଛନ୍ତ ଯେ, ଯଦଓ ସଂପୂର୍ଣ୍ଣ ସର୍ପ ଜାତକୁ ବିଷଧର ଓ ବିଷହୀନ ଭାବରେ ଦୁଇଟି ପ୍ରଧାନ ଭାଗରେ ବଭକ୍ତ କରଯାଏ, ତଥାପି ଆମେ ଦୁହେଁ କେତେ ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ସାପଙ୍କ ଗ୍ରନ୍ଥି ତଥା ଲାଳ ସମ୍ବନ୍ଧରେ ଖୁବ୍ ଭଲଭାବରେ ଅଧ୍ୟୟନ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଛୁ ଯେ କୌଣସି ସାପ ବିଷହୀନ ନୁହେଁ । ଯେଉଁମାନଙ୍କର ବିଷଦାନ୍ତ ଅଛି ସେଇମାନେ ଯେ କେବଳ ବିଷଧାରୀ ସାପ ପ୍ରକୃତରେ ତା ନୁହେଁ । ଏପରି ବି ଦେଖାଯାଏ ଯେ ବିରାଡ଼ି ଆଦି କେତେକ ଜୀବ କାମୁଡ଼ିଲେ ମଧ୍ୟ ମନୁଷ୍ୟ ମୃତ୍ୟୁ ମୁଖରେ ପଡ଼ଥାଏ । ଅତଏବ ଯେଉଁ ସାପ ମାନଙ୍କର ବିଷଗ୍ରନ୍ଥି ଅଛି ସେମାନେ ପ୍ରକୃତରେ ବି ବିଷଧର ।

ପୂର୍ବେ କୁହାଯାଇଛି ଯେ ଭାରତବର୍ଷରେ ପନ୍ଦରଶହ ପ୍ରକାର ଜାତର ସାପ ଦେଖିବାକୁ ମିଳେ । ଏହି ସାପଙ୍କୁ ନ'ଟି ବଂଶରେ ବଭକ୍ତ କରଯାଇଅଛି । ଏଥି ମଧ୍ୟରୁ 29 ଜାତ ସାମୁଦ୍ରିକ, ଦୁଇଟି ନାଗଜାତର, ଆଉ ସାତ ଜାତ କୋବ୍ରାଲ ଓ ଅନ୍ୟ 10 ଜାତର କରେଇତ ସାପ ବିଷାକ୍ତ ଅଟନ୍ତ ।

ବାହ୍ୟ ଆକୃତ ଦେଖି ବିଷାକ୍ତ ସାପକୁ ଜାଣିବା କଷ୍ଟକର । ବିଷଦାନ୍ତ ବିଷଧର ସାପର ଚହ୍ନ ଅଟେ । ନପୁଣ ସାପୁଆ କେଳା ସାପର ମୁହଁ ଖୋଲି ତାର ବିଷଦାନ୍ତ ଆପଣଙ୍କୁ ଦେଖାଇ ଦେଇପାରେ । ସାପ ସମ୍ବନ୍ଧରେ ଜାଣିଥିବା ବ୍ୟକ୍ତି ସାପର ମୁଣ୍ଡକୁ ଦେଖି ଏହାର ବିଷଦାନ୍ତ ଅଛି କ ନାହିଁ କହିଦେଇ ପାରିବେ ।

ବିଷଦାନ୍ତ ବିଭାଗ ଅନୁସାରେ ବିଷଧର ସାପକୁ ତିନୋଟି ଶ୍ରେଣୀରେ ଭାଗ କରାଯାଇଛି । ପ୍ରଥମ ଶ୍ରେଣୀର ସାପଙ୍କ ବିଷଦାନ୍ତ ତାଙ୍କ ମାଡ଼ିର ପଛପଟେ ରହିଥାଏ । ଏବଂ ଶେଷୋକ୍ତ ଦୁଇଟି ଜାତିର ସାପଙ୍କର ବିଷଦାନ୍ତ ଆଗରେ ଥାଏ । ସାପମାନଙ୍କ ମଧ୍ୟରେ ଗୋଟିଏ ଜାତିର ସାପଙ୍କ ବିଷଦାନ୍ତ ଗୋଟିଏ ସ୍ଥିର ହୋଇଥିବା ହାଡ଼ରେ ଲାଗି ରହିଥାଏ । ଏବଂ ଅନ୍ୟ ଜାତିର ସାପମାନଙ୍କ ବିଷଦାନ୍ତ ବଡ଼ ହୋଇଥାଏ ଓ ମାଡ଼ିର ସମ୍ମୁଖ ଭାଗରେ ଲାଗି ରହିଥାଏ । ପ୍ରଥମେ ଲୋକମାନେ ପ୍ରଥମ ଜାତିର ସାପଙ୍କୁ ବିଷହୀନ ବୋଲି ଭାବୁଥିଲେ କାରଣ ଏହାର ବିଷ ଦାନ୍ତ ଜୀବ ଦେହରେ ସହଜରେ ପଶିପାରେ ନାହିଁ । କିନ୍ତୁ ଏମାନଙ୍କ ବିଷରେ ମନୁଷ୍ୟର ମୃତ୍ୟୁ ହୋଇପାରେ । ସବୁ ସାପଙ୍କ ବିଷଦାନ୍ତରେ ଥଳୀଥାଏ । କେତେକଙ୍କର ଦୁଇଟି ଥଳୀ ଥିବାର ଦେଖା ଯାଇଛି ଏବଂ ଆଉ କେତେକ ସାପଙ୍କ ଦୁଇଥଳୀ ମଝିରେ ଆଉ ଗୋଟିଏ ଥଳୀଥାଏ । ସମୟ ସମୟରେ ବିଷଦାନ୍ତ ଭାଙ୍ଗିଯାଏ ଓ ପୁଣି ନୂଆ କରି ଦାନ୍ତ ବାହାରେ । ଏହିପରି ବିଷାକ୍ତ ସାପଙ୍କ ବିଷରୁ ସହଜରେ ରକ୍ଷାମିଳେ ନାହିଁ ।

ସାପ ବିଷର ରଙ୍ଗ ଫିକା ପାଉଁଶିଆ ହୋଇଥାଏ । ବିଷର କୌଣସି ସ୍ୱାଦ ନାହିଁ । କିନ୍ତୁ ନାଗସାପର ବିଷ ଲଙ୍କା ପରି ରାଗଯୁକ୍ତ ଅଟେ । ସାପର ବିଷ ଖାଇଥିବା ଲୋକ ଏହାକୁ ପୁଷ୍ଟିକର ବସ୍ତୁ ବୋଲି କହନ୍ତି । ଏହାର ହଜମ କରେଇବା ଶକ୍ତି ପ୍ରବଳ ଅଟେ । ଯଦି କାହାର ଗଳା, ମୁହଁ, ପେଟରେ କୌଣସି କ୍ଷତ ଥାଏ ତେବେ ଏହି ବିଷ କ୍ଷତିକାରକ ତଥା ପ୍ରାଣଘାତୀ ମଧ୍ୟ ହୋଇପାରେ । ପ୍ରତ୍ୟେକ ବିଷଧର ସାପର ଥଳୀରେ କିଛି ପରିମାଣରେ ବିଷଥାଏ । ଯେତେବେଳେ ସାପ ଏକାଥରେ ତିନି ଚାରି ଥର କାମୁଡ଼େ ହଏ ତେବେ ବିଷର ପ୍ରଭାବ ମନୁଷ୍ୟ ଦେହରେ କିଛି ମାତ୍ର ପଡ଼େ ନାହିଁ । ସାପର ବିଷଥଳୀ ଯେବେ ଖାଲି ହୋଇଯାଏ ତେବେ ତାହା ପୂର୍ଣ୍ଣ ହେବାକୁ ବହୁତ ସମୟ ଲାଗେ । ଏହି ସମୟରେ ବିଷର ପ୍ରଭାବ କମ୍ ପଡ଼େ । ସାପ ମୁହଁରୁ ବାହାର କରାଯାଇଥିବା ବିଷର ପ୍ରଭାବ ଅଧିକ ସମୟ ପର୍ଯ୍ୟନ୍ତ ରହେ । ଏହାକୁ ଶୁଖାଇ ବୋତଲରେ ବହୁତ ବର୍ଷ ପର୍ଯ୍ୟନ୍ତ ରଖାଯାଇପାରେ । କିନ୍ତୁ ପାଣିରେ ମିଶାଇ ଦେଲେ ଏହି ବିଷ ଶୀଘ୍ର ଖରାପ ହୋଇଯାଏ ।

ପ୍ରତ୍ୟେକ ସାପର କାମୁଡ଼ିବା ଲକ୍ଷଣ ସମସ୍ତଙ୍କ ଜାଣିବା ଆବଶ୍ୟକ । ପ୍ରତ୍ୟେକଙ୍କ କାମୁଡ଼ିବା ଲକ୍ଷଣ ଭିନ୍ନ ଭିନ୍ନ । ନାଗ ସାପ କାମୁଡ଼ିବାର ପ୍ରଭାବ, ଭାଇପର ଶ୍ରେଣୀର ସାପର ଦଂଶନ ପ୍ରଭାବଠାରୁ ଭିନ୍ନ ଅଟେ । ନାଗ ସାପ କାମୁଡ଼ିବାର ପ୍ରଭାବ ଦଶ ମିନଟରୁ ଦୁଇଘଣ୍ଟା ଭିତରେ ପ୍ରକଟିତ ହୁଏ । ଏହା ବିଷର ମାତ୍ରା ଓ କାମୁଡ଼ିବା ଢଙ୍ଗ ଉପରେ ନିର୍ଭର କରେ । କ୍ଷତ ସ୍ଥାନରେ ଧିରେ ଧିରେ କଷ୍ଟ ଦାୟକ ଜ୍ୱଳନ ଆରମ୍ଭ ହୁଏ, ନିଶ୍ୱାସ ପ୍ରଶ୍ୱାସର ଗତି କ୍ଷିପ୍ର ହୋଇଯାଏ ଏବଂ କିଛି ସମୟ ପରେ ରୋଗୀ ଜଡ଼ବତ୍

ହୋଇଯାଏ । କାମୁଡ଼ିବା ସ୍ଥାନଟି ଫୁଲିଯାଏ ଏବଂ ସେଥିରୁ ଫିକା ପାଉଁଶିଆ ରଙ୍ଗର ରକ୍ତ ବାହାରେ । ରୋଗୀର ସମସ୍ତ ଦେହ ଦୁର୍ବଳ ଓ ଶିଥିଳ ହୋଇଯାଏ ଏବଂ ତାର ବାକ୍ଶକ୍ତି କମିଯାଏ । ତା ମୁହଁରୁ ଫେଣ ବାହାରେ । ଦୁର୍ବଳତା ହେତୁ ଶ୍ୱାସକ୍ରିୟାର ଗତି ମନ୍ଥର ହୋଇ ଆସେ ଏବଂ ଶେଷରେ ସେ ସଂସାରରୁ ବିଦାୟ ନେଇଯାଏ । ସାଧାରଣତଃ ନାଗ ସାପ କାମୁଡ଼ିବା ପାଞ୍ଚ ଘଣ୍ଟାରୁ ବାର ଘଣ୍ଟା ମଧ୍ୟରେ ଲୋକର ମୃତ୍ୟୁ ହୁଏ ।

'ରସଲସ୍ ଭାଇପର' କାମୁଡ଼ିଲେ ନାଗ ସାପ କାମୁଡ଼ିବା ପରି ଫୁଲିଯାଏ ଏବଂ ବହୁତ ଯନ୍ତ୍ରଣା ହୁଏ । ରୋଗୀ ଖୁବ୍ ଶୀଘ୍ର ଦୁର୍ବଳ ହୋଇପଡ଼େ କିନ୍ତୁ ହାତଗୋଡ଼ ଶିଥିଳ ହୁଏ ନାହିଁ । ଏହି ସାପ କାମୁଡ଼ିଲେ ହୃତ୍ସ୍ପନ୍ଦନ ବନ୍ଦ ହୋଇ ଯିବାର ଆଶଙ୍କା ଥାଏ । ରୋଗୀ ଦେହରୁ ଅତ୍ୟଧିକ ଝାଳ ବହେ ଓ ରୋଗୀ ବେଳେ ବେଳେ ବାନ୍ତି ମଧ୍ୟ କରେ । କେତେକ ରୋଗୀଙ୍କ କ୍ଷତ ସ୍ଥାନରେ ରକ୍ତ ଓ ପୂଜ ଜମିଯାଏ । ଏହିପରି ମନୁଷ୍ୟର ମୃତ୍ୟୁ ଅତ୍ୟନ୍ତ କଷ୍ଟଦାୟକ ଅଟେ । କରେଇତ ସାପର ଦଂଶନ ଲକ୍ଷଣ ନାଗସାପ ଦଂଶନର ଲକ୍ଷଣ ସହିତ ମିଶିଯାଏ । କିନ୍ତୁ ଏହି ସାପ କାମୁଡ଼ିଲେ ରୋଗୀର ପେଟରେ ବହୁତ ଯନ୍ତ୍ରଣା ହୁଏ । ସାମୁଦ୍ରିକ ସାପର ଦଂଶନ ଲକ୍ଷଣ ନାଗସାପର ଦଂଶନ ଲକ୍ଷଣ ପରି । କିନ୍ତୁ ଏହାର ଲକ୍ଷଣ ବହୁତ ଧୀରେ ଧୀରେ ପ୍ରକଟିତ ହୁଏ । କାରଣ ସାମୁଦ୍ରିକ ସାପ ଏକା ଥରକେ କମ୍ ବିଷ ଉଦ୍‌ଗାରେ ତେବେ ଲୋକମାନଙ୍କୁ ଏହା ମନେ ରଖିବାକୁ ହେବ ଯେ ବିଷହୀନ ସାପ କାମୁଡ଼ିଲେ ଲୋକେ ଅନେକ ସମୟରେ କେବଳ ଭୟ ହେତୁ ମୃତ୍ୟୁ ମୁଖରେ ପଡ଼ନ୍ତି ।

ପୂର୍ବ କାଳରେ ଲୋକମାନଙ୍କର ଧାରଣା ଥିଲା ଯେ ମନୁଷ୍ୟର ଲାଳରେ କୌଣସି କୌଣସି ଜାତିର ବିଷାକ୍ତ ସାପ ମରିଯାଆନ୍ତି । କଥିତ ଅଛି ଯେ ହୋଟେନଟଟ୍ ଜାତିର ଲୋକମାନଙ୍କ ଛେପରେ ବିଷଧର ସାପର ମୃତ୍ୟୁ ମଧ୍ୟ ହୋଇଥାଏ । ଏବେ ଏହି କାହାଣୀକୁ କେହି ବିଶ୍ୱାସ କରନ୍ତି ନାହିଁ । ବୋଧହୁଏ ସେମାନେ ଜଙ୍ଗଲର ଜଡ଼ିବୁଟୀ କିମ୍ବା ତମାଖୁ ଚୋବେଇ ସାପ ଉପରେ ଛେପ ପକାଇ ଦେଲେ ସାପର ମୃତ୍ୟୁ ହୋଇ ଯାଉଥିଲା ।

ପୂର୍ବ କାଳରେ ଏପରି ପ୍ରଥା ଥିଲା ଯେ ଯେଉଁ ଲୋକମାନେ ସର୍ପ ବହୁଳ ଜଙ୍ଗଲରେ କାମ କରୁଥିଲେ ସେମାନେ କିଛି ବିଷ ଦେହ ଭିତରେ ପ୍ରବେଶ କରାଉଥିଲେ କିମ୍ବା ଖାଇ ଦେଉଥିଲେ । ଯାହାଦ୍ୱାରା କି ସେମାନଙ୍କୁ ସାପ କାମୁଡ଼ିଲେ ମଧ୍ୟ ବିଷର କୌଣସି ପ୍ରଭାବ ପଡ଼ୁ ନ ଥିଲା ।

1813ରେ କ୍ୟାମ୍ପବେଲ ସାହେବ ଲେଖିଥିଲେ ଯେ ହୋଟେନଟଟ୍ ଜାତିର ଲୋକମାନେ ବିଷଧର ସାପକୁ ଧରି ତାର ବିଷ କାଢ଼ୁଥିଲେ ଏବଂ ତାକୁ ପିଉଥିଲେ । ଟମାସ ସାହେବ 1892ରେ ଲେଖିଥିଲେ ଯେ ଆଫ୍ରିକାର ସିଆଲୀ, ଇଟାଲୀର ମାରସୀ, ଭାରତର ଗୌଡ଼ ତଥା ଆଦିବାସୀ ଜାତିର ଲୋକମାନେ ବିଷର ପ୍ରଭାବରୁ ମୁକ୍ତ ଥିଲେ । କାରଣ ତାଙ୍କ ରକ୍ତରେ ସାପର ବିଷ ମିଶି ରହୁଥିଲା ।

ଡ୍ରମଣ୍ଡ ସାହେବ 1844 ରେ ଇଶୋଷ୍ଟ ନାମକ ଏକ ସାପୁଆ ଜାତିର ସୁନ୍ଦର ବର୍ଣ୍ଣନା କରିଥିଲେ । ସେଥିରେ ସେ ଲେଖିଛନ୍ତି ଯେ ସେହି ଜାତିର ଲୋକମାନେ ଜାଣି ଜାଣି ସାପକୁ ତାଙ୍କ ଦେହରେ କାମୁଡ଼ିବାକୁ ଦେଉଥିଲେ । ଏହାଦ୍ୱାରା ବିଷର କୌଣସି ଖରାପ ପ୍ରଭାବ ତାଙ୍କ ଉପରେ ପଡୁ ନ ଥିଲା ଏବଂ ଧୀରେ ଧୀରେ ସେମାନେ ବିଷ ପ୍ରଭାବରୁ ମୁକ୍ତ ଥିଲେ । ଏହି ଜାତିର ପ୍ରତିଷ୍ଠାତା ଥିଲେ ସିଡ଼ନା ଇଜର । ଏକଦା ସେ ତାଙ୍କ ଅନୁଚରମାନଙ୍କ ସହିତ ମରୁଭୂମି ମଧ୍ୟ ଦେଇ ଏକ ସ୍ଥାନକୁ ଯାଉଥିଲେ । କିଛି ସମୟ ପରେ ତାଙ୍କ ଅନୁଚରମାନଙ୍କୁ ଭୋକ ଲାଗିବାରୁ ସେମାନେ ଖାଇବା ପାଇଁ ଏକା ସାଙ୍ଗରେ ପାଟି କଲେ । ସେମାନଙ୍କ ପାଟି ଶୁଣି ସେ ବିରକ୍ତ ହୋଇ ତାଙ୍କ ଆରବୀ ଭାଷାରେ 'କୁଲସୀମ' ବୋଲି କହିଲେ ଯାହାର ଅର୍ଥ ହେଉଛି ବିଷ ଖାଅ । ତାଙ୍କ ଦଳପତି ଉପରେ ସେମାନଙ୍କର ଏତେ ବିଶ୍ୱାସ ଥିଲା ଯେ ସେହି ଦିନଠାରୁ ସେମାନେ ବିଷଧର ସାପକୁ ଧରି ଖାଇବାକୁ ଆରମ୍ଭ କଲେ । ଯେଉଁଥିପାଇଁ ଆଜି ତାଙ୍କର ସନ୍ତାନବର୍ଗ ସାପ ବିଷରୁ ମୁକ୍ତ ଅଛନ୍ତି । ଶୁଣାଯାଏ କେତେକ ପ୍ରଦେଶରେ ଲୋକମାନେ ବିଷାକ୍ତ ସାପକୁମାରି ସେମାନଙ୍କ ବିଷକୁ ଶୀଘ୍ର କାଢ଼ି ପାଟିରେ ଢ଼ାଳି ଦେଉଥିଲେ ଏବଂ ପିଇ ମଧ୍ୟ ଦେଉଥିଲେ । ଏହି ପ୍ରକାର ଉପଚାର ହେତୁ ସେମାନେ ବିଷ ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ ହେଉଥିଲେ ।

ରିନ ସାହେବ କଲେମ୍ବୋର ଏକ ପତ୍ରିକାରେ ପ୍ରକାଶ କରିଥିଲେ ଯେ 1854 ମସିହାରେ ଏକ ସାପୁଆ କେଲା ତାଙ୍କର କୋଠିକୁ ଆସି ସାପ ଖେଳ ଦେଖାଇବା ପାଇଁ ଇଚ୍ଛା ପ୍ରକାଶ କରିଥିଲା । ସେ ବହୁତ ଥର ସାପଖେଳ ଦେଖିଥିବାରୁ ତାଙ୍କର ଆଉ ଖେଳ ଦେଖିବା ଆଗ୍ରହ ନ ଥିଲା । ସେ ତାକୁ ଦୂର ଜଙ୍ଗଲରେ ଗୋଟିଏ କୁଦରେ ରହୁଥିବା ନାଗ ସାପକୁ ଧରିବା ପାଇଁ କହିଲେ । ସେ କେଲାକୁ କହିଲେ ଯେ ଯଦି ସେ ନାଗ ସାପକୁ ଧରିଦିଏ ତେବେ ତାକୁ ଗୋଟିଏ ଟଙ୍କା ଦେବେ । ତାଙ୍କର ପ୍ରସ୍ତାବରେ କେଲା ରାଜି ହୋଇଗଲା ।

କେଲା ସାପ ଧରିବାକୁ ଯିବା ପୂର୍ବରୁ ରିନ ସାହେବ ତାହାର ପାଖରେ ଥିବା ସମସ୍ତ ସାପକୁ ଗଣତି କରିଥିଲେ ଓ ତାର ଲୁଗାପଟା ଭଲକରି ଦେଖିଥିଲେ ଯେପରି ସେ ସାଥିରେ କୌଣସି ସାପ ନେଇକରି ନ ଯାଏ । ଯେତେବେଳେ ରିନ ସାହେବ ଓ ତାଙ୍କର ସାଥି ଜଙ୍ଗଲରେ ପହଞ୍ଚିଲେ ସେମାନେ ଦେଖିଲେ ଯେ କେଲା ତାର ବାଜାକୁ ସେହି କୁଦ ପାଖରେ ବଜାଉଅଛି । ଅଳ୍ପ ସମୟ ପରେ ଗୋଟିଏ ନାଗ ସାପ ସେହି କୁଦ ଭିତରୁ ବାହାରିଲା ଓ କେଲାକୁ ଦେଖି ପଳାଇବାକୁ ଲାଗିଲା । କିନ୍ତୁ କେଲା ସାପର ଲାଞ୍ଜ ଧରି ପକାଇଲା ଓ ସାପକୁ ବୁଲାଇ ବୁଲାଇ ତାଙ୍କର କୋଠି ପାଖକୁ ନେଇ ଆସିଲା । ଧରିବା ସମୟରେ ସାପ କେଲାର କିଛି କ୍ଷତି କରି ନ ଥିଲା କିନ୍ତୁ ସେ ଯେତେବେଳେ ତାକୁ ଧରି ଆଣିଲା ସାପ ହଠାତ୍ ବୁଲିପଡ଼ି ତାକୁ କାମୁଡ଼ି ଦେଲା ।

କେଲା ସାପ ଚୋଟ ମାରିବା ଜାଗା ଉପରେ ସଙ୍ଗେ ସଙ୍ଗେ ପଟି ଜୋରରେ ବାନ୍ଧି ଦେଲା ଓ କ୍ଷତ ଜାଗା ଉପରେ ଗୋଟିଏ ସାପର ମଣି ରଖିଦେଲା । କେତେ ସମୟ ପର୍ଯ୍ୟନ୍ତ ତାକୁ ବହୁତ କଷ୍ଟ ହୋଇଥିଲା । କିନ୍ତୁ ଆସ୍ତେ ଆସ୍ତେ ତାହା କମିବାକୁ ଲାଗିଥିଲା ଓ କ୍ଷତ ସ୍ଥାନରେ ଲାଗିଥିବା ମଣିଟି ଆପେ ଆପେ ଖସି ଗଲା । କେଲା ସୁସ୍ଥ ହେଲା ପରେ ଗୋଟିଏ କନା ସାପ ଆଗରେ ବିସ୍ତାଇ ଦେଲା । ଏହି କନାକୁ ସାପ ଧରିବା ପାଇଁ ଦୌଡ଼ିଲା । କନା ପାଖକୁ ଯାଇ ସାପ ଯେତେବେଳେ ତାର ଦାନ୍ତ ସାହାଯ୍ୟରେ କାମୁଡ଼ିବାକୁ ଆରମ୍ଭ କଲା ଠିକ୍ ଏହି ସମୟରେ କେଲା ପଛରୁ ସାପର ବେକକୁ ଧରିପକାଇଲା । ଧରିବା ସଙ୍ଗେ ସଙ୍ଗେ ସେ ତାର ବିଷ ଦାନ୍ତକୁ ବାହାର କରି ସାହେବଙ୍କୁ ଦେଲା । ଏହି ବିଷ କାଢ଼ିବା ସମୟରେ ଆଉ ତିନିଜଣ ବ୍ୟକ୍ତି ସେଠାରେ ଉପସ୍ଥିତ ଥିଲେ ।

ଆଜିକାଲି ସାପ କାମୁଡ଼ିଥିବା ରୋଗୀମାନଙ୍କର ବିଷ ଦୂର କରିବାକୁ ଏବଂ ଭଲ କରିବା ପାଇଁ ନୂତନ ଚିକିତ୍ସା ପ୍ରଣାଳୀ ବାହାର କରାଯାଇଛି । ରୋଗୀର ରକ୍ତରେ 'ଆଣ୍ଟି-ଭେନାମ୍' ଇନ୍‌ଜେକ୍‌ସନ ଦିଆଯାଉଛି । ବିଷନାଶକ ରସ ପ୍ରତ୍ୟେକ ଜାତିର ସର୍ପଙ୍କ ବିଷ ପାଇଁ ଭିନ୍ନ ଭିନ୍ନ । ଉଦାହରଣ ସ୍ୱରୂପ, ନାଗ ସାପର ବିଷରୁ ବାହାରିଥିବା ଔଷଧ ବା ସିରମ୍ କେବଳ ନାଗ କାମୁଡ଼ିଥିବା ରୋଗୀକୁ ଭଲକରି ଦେଇପାରେ । ସାପ କାମୁଡ଼ିଥିବା ସମୟରେ କେଉଁ ଜାତିର ସାପ କାମୁଡ଼ିଛି ତାହା ଜାଣିବା ଅତ୍ୟନ୍ତ କଷ୍ଟକର । ଭାରତବର୍ଷରେ ବିଷଧର ନାଗ ଓ ଖଇପର ଜାତିର ସାପ କାମୁଡ଼ିବା ଦ୍ୱାରା ପ୍ରତିବର୍ଷ ପ୍ରାୟ ତିରିଶି ହଜାର ଲୋକ ମୃତ୍ୟୁ ମୁଖରେ ପଡ଼ୁଛନ୍ତି । ବମ୍ବେର ହାଫ୍‌କିନ ଇନ୍‌ଷ୍ଟିଚ୍ୟୁଟରେ ବିଷର ସିରମ୍ ତିଆରି ହୁଏ । ପ୍ରଥମେ ଠେକୁଆ, ଘୋଡ଼ା ଓ ଅନ୍ୟ ଜୀବଙ୍କ ରକ୍ତରେ ବିଷକୁ ଇଞ୍ଜେକ୍‌ସନ୍ ଦ୍ୱାରା ପ୍ରବେଶ କରେଇ ଦିଆଯାଏ । ଏହିପରି ପ୍ରତିଦିନ କିଛି ବିଷ ରକ୍ତରେ ପ୍ରବେଶ କରାଇ ଦିଆଯାଇଥାଏ । କେତେ ମାସ ପରେ ବିଷର ପ୍ରଭାବ ମୋଟେ ନ ଥାଏ ଏବଂ ଏହି ଜୀବଙ୍କ ରକ୍ତ ବାହାର କରି ନିଆଯାଏ । ରକ୍ତ ଜମାଟ ବାନ୍ଧିଗଲା ପରେ କେବଳ ପାଣି ଅଂଶତକ ରହିଯାଏ ଯାହାକୁ ସିରମ ଅଥବା ଆଣ୍ଟିଭେନମ୍ କୁହାଯାଏ । ଏହି ସିରମକୁ ଛୋଟ ଛୋଟ କାଚ ନଳୀରେ ବାୟୁଶୂନ୍ୟ କରି ବନ୍ଦକରି ସହର ଓ ମଫସଲକୁ ପଠାଇ ଦିଆଯାଏ ।

ବିଷଧର ସାପକୁ ଧରି ଗୋଟିଏ ସୁରକ୍ଷିତ ସ୍ଥାନରେ ରଖାଯାଏ ଏବଂ ପ୍ରତ୍ୟେକ ସାପର ମୁହଁରୁ କିଛି ମାତ୍ରାରେ ବିଷ କାଢ଼ି ନିଆଯାଏ । ସାପର ବିଷ କାଢ଼ିବା ଅତ୍ୟନ୍ତ କଷ୍ଟକର । କେବଳ ସାହସୀ ତଥା ଶାନ୍ତ ପ୍ରକୃତିର ବ୍ୟକ୍ତି ଏହି କାମ କରିବାକୁ ସକ୍ଷମ ଅଟନ୍ତି । ଇନ୍‌ଷ୍ଟିଚ୍ୟୁଟର କର୍ମଚାରୀମାନେ ସର୍ବପ୍ରଥମେ ସାପକୁ ବିଶେଷ ଭାବରେ ନିର୍ମିତ ବାଉଁଶ ବାଡ଼ିରେ ଚିପି ଧରନ୍ତି ଯଦ୍ୱାରା ସାପ ମୋଟେ ହଲଚଲ ହୋଇପାରେ ନାହିଁ । ତା ପରେ ହାତର ବୁଢ଼ା ଆଙ୍ଗୁଠି ଓ ଅନ୍ୟ ଅଙ୍ଗୁଳି ସାହାଯ୍ୟରେ ତାର ମୁଣ୍ଡକୁ ଚିପି ଧରନ୍ତି ଏବଂ ଧୀରେ ଧୀରେ ମୁଣ୍ଡକୁ ଉପରକୁ ଉଠାନ୍ତି । ମୁଣ୍ଡକୁ ଅଳ୍ପ ଉପରକୁ ଉଠାଇ ଗୋଟିଏ ଚମଡ଼ା ବା ବିଶେଷ ପ୍ରକାର କନାରେ ଯୋଡ଼ା ହୋଇଥିବା କାଚ ପାତ୍ରରେ ରଖି ଦିଅନ୍ତି ।

ସାପକୁ ଏହି ଲୁଗା ଉପରେ ବାରମ୍ବାର କାମୁଡ଼ିବାକୁ ଦିଆଯାଏ । ତଦ୍ୱାରା ତାର ଦାନ୍ତ ଏହି ଲୁଗା ଭିତରେ ପଶିଯାଏ ଏବଂ ବିଷ ବାହାରି ସେହି ପାତ୍ରରେ ପଡେ । ଏହି ବିଷକୁ ଶୁଖାଇ ବନ୍ଦ କରି କସୌଲି ହସପିଟାଲକୁ ପଠାଇ ଦିଆଯାଏ । ସେଠାରେ ଏହି ବିଷକୁ ପାଣିରେ ମିଶାଇ ଘୋଡ଼ା ଓ ଠେକୁଆ ଆଦି ଜୀବଙ୍କୁ ଇନ୍‌ଜେକ୍‌ସନ ଦିଅଯାଏ । ଏହି ସିରମ ଆମେରିକାର ଥିରେସ୍ୟ ଇନ୍‌ଷ୍ଟିଚ୍ୟୁଟରେ ମଧ୍ୟ ପ୍ରସ୍ତୁତ କରାଯାଏ ।

ଉତ୍ତର ପୂର୍ବ ଆମେରିକା, ମେକସିକୋ ଏବଂ ମଧ୍ୟଆମେରିକାର ହାରଲେକ୍ୱିନ କୋରଲ ସାପ ଅତ୍ୟନ୍ତ ବିଷାକ୍ତ ଅଟେ । ଏହା ଅଧ ମିଟରରୁ ଅଧିକ ଲମ୍ବ ହୋଇଥାଏ ଏବଂ ଏହାର ଦେହରେ କଳା ଗାର ସହିତ ନାଲି ଦାଗ ଥାଏ । ଏହାର କାମୁଡ଼ିବା ଢ଼ଙ୍ଗ ବିଚିତ୍ର ଅଟେ । ଏହି ସାପ ଆରାମରେ ଅତି ଧୀରେ ଧୀରେ ଆଗକୁ ଚାଲେ ଏବଂ ଶତ୍ରୁର ମାଂସ-ପେଶୀରେ ତାର ମାଢ଼ିକୁ ଜୋରରେ ପଶେଇ ଦିଏ ଏବଂ ବହୁତ ଡ଼େରିରେ ଛାଡେ ।

ନାଗ ସାପ ଆଠ ପ୍ରକାର ଜାତିର ଅଛନ୍ତି । ଏସିଆ ଓ ଆଫ୍ରିକାରେ ଏହି ଜାତିର ସାପ ଦେଖାଯାଏ । ଭାରତୀୟ ନାଗ ସାପର ଫଣାରେ ଏକାଧିକ ଗୋଲ ଚିହ୍ନଥାଏ । ହିନ୍ଦୁ ଲୋକମାନେ ନାଗକୁ ମାରନ୍ତି ନାହିଁ । କୌଣସି କୌଣସି ସ୍ଥାନରେ ଏହାକୁ ପୂଜା ମଧ୍ୟ କରାଯାଏ । ଏହାର ମୁଣ୍ଡରେ ଥିବା ଚିହ୍ନକୁ ଭଗବାନ ଶ୍ରୀକୃଷ୍ଣଙ୍କ ପାଦର ଚିହ୍ନ ବୋଲି କୁହାଯାଏ । ବର୍ତ୍ତମାନ ଏହି ଅନ୍ଧ ବିଶ୍ୱାସ ଧୀରେ ଧୀରେ ଲୋକମାନଙ୍କ ମନରୁ କମି ଯାଉଛି । ଗୋଟେ ଗୋଟେ ନାଗ ଦୁଇ ମିଟର ପର୍ଯ୍ୟନ୍ତ ଲମ୍ବ ହୋଇଥାଏ ।

ପୁରାତନ ନାଗର ମୁହଁରେ ଏକ ପ୍ରକାର ମଣି ଥାଏ ବୋଲି ଅନେକ ଲୋକଙ୍କର ବିଶ୍ୱାସ । କୁହାଯାଏ ଯେ ସାପ ମଣିକୁ ରାତିରେ ବାହାରେ ରଖି ଛୋଟ ଛୋଟ ଜୀବଙ୍କୁ ନିଜ ଆଡ଼କୁ ଟାଣି ନିଏ ଏବଂ ଖାଇଦିଏ । କିନ୍ତୁ ଏହି କାହାଣୀ ସଂପୂର୍ଣ୍ଣ ମିଥ୍ୟା । ନାଗରାଜ ଅତ୍ୟନ୍ତ ଭୟଙ୍କର ସାପ । ଏହାର ଲମ୍ବ ଚାରି ମିଟର ପର୍ଯ୍ୟନ୍ତ ହୋଇଥାଏ । ଏହା ଭାରତ, ବର୍ମା, ମାଲୟ ଓ ଦକ୍ଷିଣ ଚୀନରେ ଦେଖିବାକୁ ମିଳେ । ଆଫ୍ରିକାର ନାଗ ବିଷ ଉଦ୍‌ଗୀରଣ କରୁଥିବା ନାଗ ରୂପରେ ପ୍ରସିଦ୍ଧ । ଏହି ସାପ ବିଷର ଏକ ପତଳା ଧାର ତାର ମୁହଁରୁ ଉଦ୍‌ଗୀରଣ କରେ । ଏହା ଦୂରରୁ ଅତ୍ୟନ୍ତ ଭୟଙ୍କର ଜଣାପଡେ । ତା' ନିକଟକୁ ଆସୁଥିବା ମଣିଷର ଆଖିକୁ ଲକ୍ଷ୍ୟ କରି ସେ ବିଷ ନିକ୍ଷେପ କରେ । ଯଦି ଏହା ମନୁଷ୍ୟର ଆଖିରେ ପଡ଼େ ତା ହେଲେ ତା'ର ଆଖି ନଷ୍ଟ ହୋଇଯାଏ । ସାପ ନିଜର ବିଷକୁ ତିନ ମିଟର ଦୂର ପର୍ଯ୍ୟନ୍ତ ନିକ୍ଷେପ କରେ । ଏହି ସାପ କାମୁଡିଲେ ମାଟେ ବଞ୍ଚନ୍ତି ନାହିଁ । ଆମେରିକାରେ ଏକ ପ୍ରକାର ସାପ ଅଛି ଯାହାର ଲାଞ୍ଜରେ ଘଣ୍ଟାକୃତି ଏକ ଚମଡା ରହିଥାଏ । ଏହି ସାପ ଯିବା ଆସିବା କଲେ ଘଣ୍ଟା ଶବ୍ଦ ପରି ଏକ ଶବ୍ଦ ସୃଷ୍ଟି ହୁଏ । ଏହି ସାପକୁ 'ରେଟଲ୍' ସାପ କହନ୍ତି । ଏହା ସମ୍ବନ୍ଧରେ ଅନେକ ପ୍ରକାରର କାହାଣୀ ପ୍ରଚଳିତ ଅଛି । ପ୍ରାଚୀନ କାଳରେ କୁଷ୍ଠ ରୋଗୀର ଚିକିତ୍ସା ଏହି ରେଟେଲ ସାପର ବିଷ

ହାଗ କରାଯାଇ ଥିଲା । ଏବେ ମଧ୍ୟ ଏହି ସାପର ବିଷ ହୋମିଓପ୍ୟାଥି ଚିକିତ୍ସାରେ ପ୍ରୟୋଗ କରାଯାଏ । ଆମେରିକାର ଆଦିମ ଅଧିବାସୀ ରେଟେଲ ସାପର ଲାଞ୍ଜକୁ ମାଳକରି ବେକରେ ପିନ୍ଧନ୍ତି ଏବଂ କାନରେ ମଧ୍ୟ ପିନ୍ଧନ୍ତି । ତାଙ୍କର ଧାରଣା ଯେ ଏହି ଲାଞ୍ଜରେ ରୋଗ ନାଶକ ଗୁଣ ଥାଏ ।

ଲୋକମାନଙ୍କର ଧାରଣା ଯେ ରାସ୍ତାରେ ଯାଉଥିବା ସମୟରେ ଯଦି ଏହି ସାପ ରାସ୍ତା ଅତିକ୍ରମ କରି ଯାଏ ତେବେ ତାହା ଅତ୍ୟନ୍ତ ଅଶୁଭ । ସେଠାକାର କେତେକ ଲୋକ ରେଟେଲ ସାପକୁ ପୂଜା ମଧ୍ୟ କରନ୍ତି । ରେଟଲ ସାପ ମୁଖ୍ୟତଃ ଆମେରିକା ଯୁକ୍ତରାଷ୍ଟ୍ର, ମେକ୍ସିକୋ ଓ ପାନାମାରେ ଦେଖାଯାନ୍ତି । ଏମାନେ ଷାଠିଏ ସେଣ୍ଟି ମିଟରରୁ ଅଢ଼େଇ ମିଟର ପର୍ଯ୍ୟନ୍ତ ଲମ୍ବ ହୋଇଥାଆନ୍ତି । ଏହାର ବିଷ ନାଗ କମ୍ବା ଗୋଖର ସାପର ବିଷପରି ଏତେ ତୀବ୍ର ନୁହେଁ । ରେଟେଲ ସାପ ଅତ୍ୟନ୍ତ ମାନ୍ଦା ପ୍ରକୃତିର । ସେଥିପାଇଁ ଏହାକୁ ପିଞ୍ଜରାରେ ମଧ୍ୟ ରଖାଯାଇ ପାରେ ନାହିଁ । ସାଧାରଣତଃ ଏହି ସାପ ନିଜର ଖାଦ୍ୟ ମଧ୍ୟ ଖାଇପାରେ ନାହିଁ । ଏହାକୁ ବଳପୂର୍ବକ ଖୋଇ ଦେବାକୁ ପଡ଼େ ।

ନିକାରାଗୁଆ ଏବଂ ଦକ୍ଷିଣ ଆମେରିକାର ବୁଷ୍ ମାଷ୍ଟର ସାପ ଅତ୍ୟନ୍ତ ବିଷାକ୍ତ ଓ ଭୟଙ୍କର । ଏହା ବ୍ରାଜିଲ ଓ ବ୍ରିଟିଶ୍ ଗାଏନାରେ ଚାରି ମିଟର ପର୍ଯ୍ୟନ୍ତ ଲମ୍ବ ହୋଇଥାଏ । ଏମାନେ ଅଧିକତର ନୂଆ ଜଙ୍ଗଲରେ ଓ ଅନ୍ୟ ଜୀବଙ୍କ ଗାତରେ ରହିବାକୁ ପସନ୍ଦ କରନ୍ତି । କୌଣସି ପ୍ରକାର ଶବ୍ଦ ଶୁଣିଲେ ମଧ୍ୟ ଏହା ପଳାଇ ଯାଏନା । ଏହାର ବିଷ ପ୍ରାଣଘାତକ ଅଟେ । ଏହାର ବିଷ ଗ୍ରନ୍ଥିରୁ 350 ଗ୍ରାମର ବିଷ ବାହାର କରାଯାଇଛି । ଏତେ ବିଷ କୌଣସି ସାପର ବିଷ ଥଳୀରେ ଥାଏନାହିଁ । ଦୂରରୁ ଦେଖିଲେ ଏହି ସାପ ଅତ୍ୟନ୍ତ ସୁନ୍ଦର ଓ ରଙ୍ଗୀନ ମନେହୁଏ । କିନ୍ତୁ ଏହାକୁ ଧରି ରଖିବା ସହଜ ନୁହେଁ କାରଣ ବନ୍ଦୀ ଅବସ୍ଥାରେ ଏହା କିଛି ଖାଦ୍ୟ ଖାଏ ନାହିଁ ।

ଆଫ୍ରିକାର ଟେଫ୍ ଏଡ଼ର ସାପମଧ୍ୟ ଅତ୍ୟନ୍ତ ଭୟଙ୍କର ଅଟେ । ଏହା ଅତ୍ୟନ୍ତ ବିଷାକ୍ତ ଅଟେ । ଏହାର ରୂପ ଓ ଆକାର ସୁନ୍ଦର ନୁହେଁ । ଏହାର ମୁଣ୍ଡ ତିନକୋଣିଆ, ଚେପଟା, ବଡ଼ ଓ ଦେହ ମୋଟା ଅଟେ । ଏହାର ଲମ୍ବ ଦେଢ଼ ମିଟର । ଏହା ମରୁଭୂମି ଓ ଶୁଷ୍କ ପ୍ରଦେଶରେ ରହିଥାଏ । ଏହି ସାପ ଅଧିକାଂଶ ସମୟ ତାର ଗାତରୁ ମୁଣ୍ଡଟିକୁ ବାହାରକୁ କାଢ଼ି ରଖିଥାଏ । ଭୟଭୀତ ହେଲେ ଏହା ତାର ଦେହକୁ ଫୁଲେଇ ଫଁ ଫଁ ଶବ୍ଦ କରେ । ଏହି ସାପ କାମୁଡ଼ିଲେ ଘୋଡ଼ା ପରି ବଡ଼ ପ୍ରାଣୀ ମଧ୍ୟ ଦୁଇଘଣ୍ଟା ଭିତରେ ମରିଯାଆନ୍ତି । ଲିଣ୍ଡେକର ନାମକ ଜଣେ ସାହେବ କହନ୍ତି କି ଯେ ଜଙ୍ଗଲ ଲୋକମାନେ ସେମାନଙ୍କର ଶରକୁ ଏହି ସାପର ବିଷରେ ବୁଡ଼ାଇ ରଖିଥାଆନ୍ତି ଏବଂ ଏହି ଶରଦ୍ୱାରା ସେମାନେ ଯେ କୌଣସି ଜନ୍ତୁଙ୍କୁ ସୁବିଧାରେ ମାରିପାରନ୍ତି ।

ଆଫ୍ରିକା ବହୁଧର ସାପଙ୍କ ବାସସ୍ଥାନ ଅଟେ । ଏହି ମହାଦେଶରେ ବିଷୁବରେଖା ନିକଟବର୍ତ୍ତୀ ଅଞ୍ଚଳ ଘନଜଙ୍ଗଲରେ ଆବୃତ ହୋଇଥିବା ହେତୁ ଏହା ଅନ୍ଧକାର ଓ ଛାୟାଚ୍ଛନ୍ନ ହୋଇଥାଏ । ଏହି ଜଙ୍ଗଲର ଉଚ୍ଚ ଡାଳରେ ବିଷାକ୍ତ ସାପ ସବୁ ଗୁଡ଼େଇ ହୋଇ ଝୁଲି ରହିଥାଆନ୍ତି । ପୂର୍ବ ଓ ପଶ୍ଚିମ ଆଫ୍ରିକାରେ ଅନ୍ୟ ଦୁଇ ପ୍ରକାରର ବିଷାକ୍ତ ସାପ ଦେଖିବାକୁ ମିଳେ । ଏହାର ବାହ୍ୟ ଆକୃତି ସହ ପଫ୍‌ଏଡ଼ର ସାପର ଅନେକ ସାମଞ୍ଜସ୍ୟ ଅଛି । କିନ୍ତୁ ଏହାର ଦେହ ଉଜ୍ଜ୍ୱଳ ରଙ୍ଗ ଓ ଚିତ୍ର ଦାଗ ସଜ୍ଜିତ ହୋଇଥାଏ । ଏହାକୁ ଦେଖିବାକୁ ବହୁତ ଭଲ ଲାଗେ । ପନ୍ଦର ବର୍ଷ ପୂର୍ବେ ଲଣ୍ଡନର ଚିଡ଼ିଆଖାନାକୁ ଆଫ୍ରିକାରୁ ଏହି ସାପ ମଧ୍ୟରୁ ଗୋଟିଏ ପଠାଇ ଦିଆଯାଇଥିଲା । ତାହାର ଲମ୍ବା ଦେଢ଼ ମିଟର ଓ ଓଜନ ଛ' କିଲୋଗ୍ରାମ ଥିଲା । ଏହି ଜାତିର ଏତେବଡ଼ ସାପ ଆଉ ଏବେ ଦେଖାଯାଉ ନାହାନ୍ତି । ଦକ୍ଷିଣ ଅଷ୍ଟ୍ରିଆ, ହଙ୍ଗେରୀ, ବଲକାନ ପ୍ରଦେଶରେ ଲମ୍ବା ନାକ ଥିବା ଏବଂ ସାହାରା ଓ ଉତ୍ତର ଆଫ୍ରିକାରେ ଶିଙ୍ଗ ଥିବା ଭାଇପର ଶ୍ରେଣୀର ସାପ ଦେଖିବାକୁ ମିଳେ । ଏଇ ଦୁଇ ଜାତି ସାପଙ୍କ ମୁଣ୍ଡରେ ଶିଙ୍ଗ ଉଠିଥାଏ । ପ୍ଲାଇନୀ ସାହେବ ଏହି ଶିଙ୍ଗ ଥିବା ସାପର ବର୍ଣ୍ଣନା କରି କହିଛନ୍ତି ଯେ ଏହି ସାପ ଗାତରୁ ମୁଣ୍ଡ ବାହାର କରି ତାର ସୁନ୍ଦରି ଶିଙ୍ଗକୁ ହଲାଇ ପକ୍ଷୀମାନଙ୍କୁ ଆକର୍ଷିତ କରିପାରେ । ପ୍ରକୃତରେ ଏହାର ଶିଙ୍ଗ ଦୁଇଟି ମାତ୍ର, ଏଠାକାର ଅଧିବାସୀମାନେ ଦୁଇଟି କଣ୍ଟା ଏହାର ମୁଣ୍ଡରେ ଲଗାଇ ଦିଅନ୍ତି ଏବଂ ଲୋକମାନଙ୍କୁ 'ଚାରିଶିଙ୍ଗୀ' ସାପର ଏକ ଭୁଲ ଧାରଣା ଦିଅନ୍ତି ।

କରେଇତ (Krait) ସାପ କଥା ଆପଣ ଶୁଣିଥିବେ । ଏହା ନାଗ ତଥା ଭାଇପରଠାରୁ ମଧ୍ୟ ବେଶି ବିଷାକ୍ତ । ଏହି ସାପ ମୁଖ୍ୟତଃ ଭାରତବର୍ଷରେ ଦେଖିବାକୁ ମିଳେ । ଏଠାରେ ଗାଢ଼ ନୀଳବର୍ଣ୍ଣର ଓ ଗାର ପଡ଼ିଥିବା ସାପ ଅଧିକ ଦେଖିବାକୁ ମିଳେ । ଗାର ପଡ଼ିଥିବା କରେଇତ ସର୍ପକୁ 'ଶଂଖୀନୀ' ବୋଲି ମଧ୍ୟ କହନ୍ତି । ଏହି ସାପ ଘରେ ରହିବାକୁ ବେଶି ପସନ୍ଦ କରେ । ଏମାନେ ବିଷାକ୍ତ ହେଲେ ମଧ୍ୟ ମାନ୍ଦା ପ୍ରକୃତିର ଅଟନ୍ତି । ଏମାନେ ରାସ୍ତାରେ ଶୀଘ୍ର ଯାଇପାରନ୍ତି ନାହିଁ । ଯଦି କେହି ଏହାକୁ ଆଘାତ କରେ ତେବେ ଓଟପକ୍ଷୀ ଯେପରି ତାର ମୁଣ୍ଡକୁ ବାଲି ଭିତରେ ସୁରକ୍ଷିତ ରଖେ, ସେହିପରି ସେ ତାର ଦେହକୁ ଗୋଲକାର କରି ମୁଣ୍ଡକୁ ତା ଭିତରେ ସୁରକ୍ଷିତ କରି ଗୁଞ୍ଜି ଦିଏ ।

**ଅଜଗର**—ଅଜଗର ପୃଥିବୀର ବୃହତ୍ତମ ସାପଙ୍କ ମଧ୍ୟରେ ଅନ୍ୟତମ । ପାଣିରେ ରହୁଥିବା ଅଜଗର ସାପର ଲମ୍ବ 10.5 ମିଟର ପର୍ଯ୍ୟନ୍ତ ହୋଇଥାଏ । ଅଜଗର ନିଜର ଶତ୍ରୁକୁ ତା' ଦେହ ସାହାଯ୍ୟରେ ଚାପି ମାରିଦିଏ । କେତେକ ଅଜଗର ସାପର ଶରୀରର ଗୋଲେଇ ମୋଟା ମଣିଷର ଜଙ୍ଘର ସଙ୍ଗେ ସମାନ ହୋଇଥାଏ । ମୋଟେଇରୁ ଅନୁମାନ କରାଯାଏ ଯେ ଏହାର ଶକ୍ତି କେତେ । ଆମ୍ଭମାନଙ୍କର ପୁରାଣରେ ଅଜଗରର ଶକ୍ତି ବିଷୟରେ ବହୁତ ବର୍ଣ୍ଣନା ଅଛି । ଏହାର ଗୋଟିଏ ଉଦାହରଣ ନଳଦମୟନ୍ତୀଙ୍କ କାହାଣୀରେ ଅଛି । ଯେତେବେଳେ ଦମୟନ୍ତୀ ଏକାକୀ ଘୋର ଅରଣ୍ୟ ମଧ୍ୟ ଦେଇ ନିଜ ପିତାଙ୍କ ରାଜ୍ୟକୁ

ଯାଉଥିଲେ ସେତେବେଳେ ଏକ ଅଜଗର ଦମୟନ୍ତୀଙ୍କ ଦେହକୁ ଚତୁର୍ଦ୍ଦିଗରୁ ଘେରି ଧଇଲା । ସେହି ସାପ ଗୋଟିଏ ଗଛ ଡାଳରେ ଲଟକି ରହିଥିଲା । ଭାଗ୍ୟବଶତଃ ଏକ ଶିକାରୀ ଦମୟନ୍ତୀଙ୍କ କ୍ରନ୍ଦନ ଶୁଣି ଝୁଲିରହିଥିବା ଅଜଗରର ମୂର୍ଦ୍ଧକୁ ଲକ୍ଷ୍ୟକରି ଶର ନିକ୍ଷେପ କଲା ଏବଂ ଅଜଗର ସେଇଠି ପଡ଼ି ମରିଗଲା ।

ମାଳୟର ଶଳ୍କଯୁକ୍ତ ଅଜଗର ବହୁତ ଲମ୍ବା ହୁଏ । ଏହା ବର୍ମା ତଥା ଇଣ୍ଡୋଚୀନରେ ମଧ୍ୟ ଦେଖିବାକୁ ମିଳେ । ହଳଦିଆ, କଳା ଓ ପାଉଁଶିଆ ରଙ୍ଗର ଢଳିହ ହୋଇ ଏହାର ଦେହ ସୁସଜ୍ଜିତ ହୋଇଥାଏ । ସୂର୍ଯ୍ୟଙ୍କ କିରଣ ଏହାର ଦେହ ଉପରେ ପଡ଼ିଲେ ଦେହରୁ ବିଭିନ୍ନ ପ୍ରକାର ରଙ୍ଗ ବାହାରେ ଏବଂ ଦେଖିବାକୁ ବହୁତ ସୁନ୍ଦର ଲାଗେ ।

ଅଜଗର ଗୋଟିଏ ସର୍ବଭକ୍ଷ ସାପ ଅଟେ । ଏହା ପକ୍ଷୀ, ସରୀସୃପ ତଥା ସ୍ତନ୍ୟପାୟୀ (ଘୁଷୁରି ଇତ୍ୟାଦି) ଜୀବଙ୍କୁ ଧରି କେତେଥରକେ ଗୋଟା ଗୋଟା ଗିଳିଦିଏ । ଏହି ସାପ ଜଙ୍ଗଲି ଲୋକଙ୍କ ପିଲାଙ୍କୁ ମଧ୍ୟ ଖାଇଯାଏ । ୬ମିଟର ଲମ୍ବା ଅଜଗର ଏକ ମୋଟା ଲୋକକୁ ନିଜ ଦେହରେ ପେଷି ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଇପାରେ । ଅଜଗରମାନଙ୍କ ଭିତରୁ କେତେକ ବନ୍ଦୀ ଅବସ୍ଥାରେ ଭଲରେ ରହନ୍ତି, ଆଉ କେତେକଙ୍କୁ ବଳପୂର୍ବକ ଖାଦ୍ୟ ଖୋଇଦେବାକୁ ପଡ଼େ । ଡିଟ୍‌ମାର ସାହେବ ଲେଖିଛନ୍ତି ଯେ, ନିଉୟର୍କର ଏକ ଚିଡିଆଖାନାରେ ଥିବା ଗୋଟିଏ ଅଜଗରକୁ ଏକବର୍ଷ ଧରି ଠେକୁଆ ଖୋଇଦେବାକୁ ପଡୁଥିଲା । ଗୋଟିଏ ବାଉଁଶ ବାଡ଼ିର ମୁଣ୍ଡରେ ୬/୭ଟା ଠେକୁଆକୁ ବାନ୍ଧି ତାର ଗଳାରେ ପଶେଇ ଦିଆଯାଉଥିଲା ଏବଂ ତା'ପରେ ସେହି ବାଡ଼ିଟିକୁ ବାହାର କରି ନିଆ ଯାଉଥିଲା । ବର୍ଷେ ଦୁଇବର୍ଷ ପରେ ସେଇ ଅଜଗର ନିଜେ ନିଜେ ତାର ଖାଦ୍ୟ ଖାଇବାକୁ ଲାଗିଲା ।

ଅଜଗର ଅଳସୁଆ ଏବଂ ନିଦ୍ରାଳୁ ଜୀବ ଅଟେ । ବହୁତ ଆରାମରେ ସେ ବୁଲାବୁଲି କରେ କିନ୍ତୁ ଭୋକ ସମୟରେ ସେ ଅତ୍ୟନ୍ତ ଚଞ୍ଚଳ ହୋଇପଡ଼େ ଏବଂ ଖୁବ୍ ଶୀଘ୍ର ଏପାଖ ସେପାଖ ହୋଇ ଶିକାର ଧରି ଅଳ୍ପ କେତେକ ମିନଟ ଭିତରେ ଖାଇଯାଏ । ସେ ଏକ ପ୍ରୌଢ଼ ଛେଳି କିମ୍ବା ହରିଣକୁ ମଧ୍ୟ ଗିଳିଦେଇ ପାରେ । କେତେକ ବର୍ଷ ପୂର୍ବେ ଲଣ୍ଡନର ଏକ ଚିଡିଆଖାନାରେ ଗୋଟିଏ ଅଜଗର ଏକ ଛେଳିକୁ ଧରି ଖାଉଥିବା ସମୟରେ ହଠାତ୍ ତାର ମୂର୍ଦ୍ଧ ହାଡ଼ ସ୍ଥାନ ଚ୍ୟୁତ ହୋଇ ପଡ଼ିଲା ଯାହା ଫଳରେ ସେ ଆଉ ଖାଇପାରିଲା ନାହିଁ । ହାଡ଼କୁ ଯଥା ସ୍ଥାନରେ ବସାଇବା ପାଇଁ ଡାକ୍ତରଙ୍କୁ ଡକା ହେଲା । ପଶୁଶାଳାର କର୍ମଚାରୀମାନେ ଏହାର ମୁଣ୍ଡକୁ ଭଲଭାବରେ ଧଇଲେ ଏବଂ ଡାକ୍ତର ସାହେବ ତାର ହାଡ଼କୁ ଯଥା ସ୍ଥାନରେ ବସାଇଦେଇ ମୂର୍ଦ୍ଧରେ ଔଷଧ ଲଗାଇ ଏକ ପଟି ବାନ୍ଧିଦେଲେ । କିଛି ସମୟ ପରେ ସେଇ ଅଜଗର ତାର ପଟିକୁ କାଢ଼ିଦେଲା ଏବଂ ତା ସହିତ ଔଷଧ ମଧ୍ୟ ବାହାରି ଆସିଲା । ଡାକ୍ତର ପୁଣି ତା ହାଡ଼କୁ ଯଥା ସ୍ଥାନରେ ବସାଇ ଦେଲେ । ଏଥର ଅଜଗର ସୁସ୍ଥ ହୋଇ ଧିରେ ଧିରେ ଖାଇବାକୁ ଆରମ୍ଭ କଲା ।

ଭାରତୀୟ ଅଜଗରର ଲମ୍ବ ସାଢ଼େ ସାତ ମିଟରରୁ ଅଧିକ ହୁଏନାହିଁ । ଅଜଗର ଚୀନ ଦେଶରେ ବି ଦେଖିବାକୁ ମିଳେ । ସମୟ ସମୟରେ ଏହା ଗୋଧି ଓ କୁମ୍ଭୀର ଛୁଆଙ୍କୁ ମଧ୍ୟ ଖାଇଯାଏ । ଆଫ୍ରିକାର ଅଜଗର 7.3 ମିଟରରୁ ବେଶି ଲମ୍ବା ହୁଏ ନାହିଁ । ଏହି ଦେଶର ଅଧିବାସୀମାନେ ଅଜଗରକୁ ମନ୍ଦିରର ପାର୍ଶ୍ବରେ ରଖି ପୂଜା କରନ୍ତି । 'ଡାଏମଣ୍ଡ' ଅଜଗର ଅଷ୍ଟ୍ରେଲିଆ ଓ ନ୍ୟୁଗିନିରେ ଦେଖିବାକୁ ମିଳେ । ଏହା ଅଢ଼େଇ ମିଟରରୁ ବେଶୀ ଲମ୍ବା ହୁଏ ନାହିଁ ଏବଂ ଏହା ଦେହରେ ଛାଲ ଉପରେ ଏକ ହଳଦିଆ ଚିହ୍ନ ଥାଏ ।

ଏକ ପ୍ରକାର ଅଜଗରକୁ ବୋଡ଼ା କୁହାଯାଏ । ଏହାର ସ୍ତ୍ରୀ ସାପ ଛୁଆ ଦିଏ । ଏହି ଜାତିର ସବୁଠୁଁ ବଡ ସାପ ହେଲା ଦକ୍ଷିଣ ଆମେରିକାର ଅନାକୋଣ୍ଡା ବା ଜଳବୋଡ଼ା । ଏହାର ବର୍ଣ୍ଣନା ପରେ ପାଣି ସାପ ବର୍ଣ୍ଣନା ପ୍ରସଙ୍ଗରେ ଦିଆଯାଇଛି ।

ଇଂରେଜୀ ପ୍ରାଚୀନ ପ୍ରକୃତି ବିଜ୍ଞାନ କୋଷରେ ଅଜଗରର ବର୍ଣ୍ଣନା ନିମ୍ନୋକ୍ତ ଭାବରେ ଦିଆଯାଇଛି :

> 'ଯେଉଁ ସମୟରେ ରୋମ ଏକ ପ୍ରସିଦ୍ଧ ନଗର ଥିଲା ସେତେବେଳେ ଟାଇବର ନଦୀ କୂଳରେ ଥିବା ଏକ ଗୁମ୍ଫାରେ ଏକ ବିଶାଳ ଜୀବ ରହୁଥିଲା । ତାହାର ଲମ୍ବା 125 ଫୁଟ ଥିଲା । ରେମୁଲସଙ୍କର ସୈନ୍ୟମାନେ ଏହି ରାକ୍ଷସର କିଛି କ୍ଷତି କରି ପାରି-ନଥିଲେ । ପରନ୍ତୁ ଏ ରାକ୍ଷସ ସୈନ୍ୟମାନଙ୍କୁ ମାରିଦେଇଥିଲା । ଏପରିକି ବଡ଼ ବଡ଼ ତୋପ ଏହାର କିଛି କ୍ଷତି କରିପାରିନଥିଲା ।'

ବୋଡା ସାପର ମାଂସ ଦକ୍ଷିଣ ଆମେରିକାର ଅଧିବାସୀମାନେ ଖାଆନ୍ତି ଏବଂ ତା' ଚର୍ବିରୁ ଅନେକ ରୋଗ ଭଲ କରୁଥିବା ମଲମ ତିଆରି କରନ୍ତି । କିନ୍ତୁ ତାର ମାଂସ ବେଶୀ ସ୍ୱାଦଯୁକ୍ତ ନୁହେଁ ।

ବିଷଧର ସାପର ବିକାଶ ସମ୍ବନ୍ଧରେ ବର୍ମା ପ୍ରଦେଶରେ ଏକ କାହାଣୀ ପ୍ରଚଳିତ ଅଛି । ଏହି କାହାଣୀ ମେସନ ସାହେବ ବର୍ଣ୍ଣନା କରିଛନ୍ତି । କାହାଣୀ ଅନୁସାରେ ପ୍ରଥମେ କେବଳ ଅଜଗରର ବିଷ ଥିଲା । ଏଯୁଗର ବିଷଧର ସାପମାନେ ଅଜଗରଠାରୁ ବିଷ ନେଇ ବିଷାକ୍ତ ହୋଇଛନ୍ତି । ସେହି ସମୟରେ ଏହି ବିଷ ଦୁଗ୍ଧ ପରି ଉଜ୍ଜ୍ୱଳ ଥିଲା । ଏହି ଅଗଜର 'ଇବ୍' ନାମକ ଏକ ନାଗୁଣୀକୁ ଧରି ନିଜର ଗୁହାକୁ ନେଇ ଯାଉଥିଲା । ସେଠାରେ ସେ ସେହି ନାଗୁଣୀକୁ କହିଲା ଯେ, ମୋ ଦେହ ଉପରେ ଚିହ୍ନ ତିଆରି କର । ସେହି ଚିହ୍ନ ଆଜିକାଲି ଅଜଗର ଦେହ ଉପରେ ଦେଖିବାକୁ ମିଳେ । ସେହି ଅଜଗର ବିଷ ଏତେ ପ୍ରଖର ଥିଲା ଯେ ଯଦି ରାସ୍ତା ଉପରେ ପଡ଼ିଥିବା କୌଣସି ମନୁଷ୍ୟର ପାଦ ଚିହ୍ନକୁ ସେ କାମୁଡ଼ିଦିଏ, ତେବେ ସେହି ମନୁଷ୍ୟ ଯେତେ ଦୂରରେ ଥାଉନା କାହିଁକି ନିଶ୍ଚୟ ମରିଯିବ । ସେହି ଅଜଗର ମନୁଷ୍ୟର ମୃତ୍ୟୁ ନିଜେ ଆଖିରେ ଦେଖି ପାରି ନଥିଲା । ତେଣୁ ସେ ଗୋଟିଏ କୁଆକୁ କହିଲା

ତୁ ଯା ଦେଖି ଆ, ଏହି ପାପ ଚନ୍ଦ୍ରକୁ ମୁଁ କାମୁଡ଼ିବାରୁ କୌଣସି ଲୋକ ମରିଛନ୍ତି କି ନାହିଁ । କୁଆ ଗୋଟିଏ ଘର ନିକଟକୁ ଯାଇ ଦେଖିଲା ସେଠି ଲୋକମାନେ ଖୁବ୍ ନାଚ ଗୀତ ମଉଜ କରୁଛନ୍ତି । ପ୍ରକୃତରେ ଆଦିମ ଅଧିବାସୀମାନେ କେହି ମରିଗଲା ପରେ ତାଙ୍କ ସାମାଜିକ ପ୍ରଥାନୁଯାୟୀ ନାଚ ଗୀତ କରନ୍ତି । କୁଆ ଅଜଗରକୁ କହିଲା,ସେ ରୋଦନ ପରିବର୍ତ୍ତେ ସେମାନେ ଆନନ୍ଦ କରୁଛନ୍ତି । ଏହା ଶୁଣି ଅଜଗର ବହୁତ ରାଗିଗଲା । ସେ ଗୋଟିଏ ଗଛ ଉପରେ ଚଢ଼ିଯାଇ ନିଜର ବିଷ ସଂପୂର୍ଣ୍ଣ ଭାବରେ ଉଦ୍‌ଗୀରଣ କରିଦେଲା । ଏହି ବିଷକୁ ଅନ୍ୟ ସରୀସୃପମାନେ ଖାଇଦେଲେ । ଏହାର ଫଳ ସ୍ୱରୂପ ସେମାନେ କାମୁଡ଼ିବା ଦ୍ୱାରା ମନୁଷ୍ୟ ମରି ଯାଉଛନ୍ତି । ସେହି ଗଛ ବି ଏକ ବିଷାକ୍ତ ପ୍ରାଣଘାତି ଗଛ ହୋଇଗଲା । ସେଥିପାଇଁ ଆଦିବାସୀମାନେ ତାଙ୍କ ତୀରର ମୁନକୁ ବିଷାକ୍ତ କରିବା ଲାଗି ସେହି ଗଛର ରସକୁ ପ୍ରୟୋଗ କରନ୍ତି । ଅଜଗର ଅନ୍ୟ ଜୀବମାନଙ୍କୁ ନେଇ ଶପଥ କରେଇ ଦେଲା ଯେ ଯେତେବେଳ ପର୍ଯ୍ୟନ୍ତ ମନୁଷ୍ୟ ତୁମକୁ ଆଘାତ ନକରିବ ସେତେକ୍ଷଣ ପର୍ଯ୍ୟନ୍ତ ତୁମେସବୁ ତାକୁ କାମୁଡ଼ିବ ନାହିଁ । ଏକଥା ଶୁଣି ନାଗ ଅଜଗରକୁ କହିଲା ଯଦି କେହି ମୋତେ ଏତେ କଷ୍ଟ ଦିଏ ଯେ ଗୋଟିଏ ଦିନରେ ସାତଥର ମୋ ଆଖିରୁ ଲୁହ ବାହାରେ ତେବେ ମୁଁ ତାକୁ ନିଶ୍ଚେ କାମୁଡ଼ିବ । ଅନ୍ୟାନ୍ୟ ବିଷଧର ସାପ ଓ ଜୀବମାନେ ମଧ୍ୟ ଅଜଗରକୁ ଏହି କଥା କହିଲେ । କିନ୍ତୁ ପାଣିସାପ ଓ ବେଙ୍ଗ କହିଲେ ଯେ ଯାହାକୁ ସେମାନେ ଛୁଇଁବେ ତାକୁ କାମୁଡ଼ିବେ । ଏହା ଶୁଣି ଅଜଗର ଏମାନଙ୍କୁ ପାଣିରେ ଠେଲି ଦେଲା । ତଦ୍ୱାରା ସେମାନଙ୍କର ବିଷ ସବୁ ପାଣିରେ ଧୋଇ ହୋଇଗଲା ଏବଂ ସେମାନେ ବିଷହୀନ ହୋଇଗଲେ ।

ଏହି ଅଜଗର ବଡ଼ ବଡ଼ ଜୀବମାନଙ୍କୁ ବି ଗିଳି ଦେଇପାରେ । ପ୍ରାଚୀନ ପୁସ୍ତକରେ ଏମାନଙ୍କର ଗିଳିବା ଶକ୍ତି ବିଷୟରେ ଅତିରଞ୍ଜିତ ବର୍ଣ୍ଣନା ସବୁ ଅଛି । ଗୋଟିଏ ପ୍ରାଚୀନ ପ୍ରକୃତି ବିଜ୍ଞାନ ପୁସ୍ତକରେ ବର୍ଣ୍ଣନା ଅଛି ଯେ ଏକ ବିରାଟ ଅଜଗର ସହିତ ଏକ ମହିଷିର ଯୁଦ୍ଧ ହୋଇଥିଲା । ଅଜଗର ଅତିଶୀଘ୍ର ସେହି ମହିଷି ଉପରେ ଝାମ୍ପି ପଡ଼ିଥିଲା ଏବଂ ଗୁଡ଼ିଆଉଡ଼ି ତାକୁ ଏପରି ଭାବରେ ଚିପି ଦେଇଥିଲା ଯେ ସେଇ ମହିଷିର ସବୁ ହାଡ ଭାଙ୍ଗି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଇଥିଲା ।

କଥିତ ଅଛି ଯେ ଫିଲିପାଇନ ଦ୍ୱୀପପୁଞ୍ଜର ଜଣେ ଅପରାଧୀ ଭୟ ହେତୁ ଗୋଟିଏ ଗୁମ୍ଫାରେ ଲୁଚି ଯାଇଥିଲା । ସେହି ଗୁମ୍ଫା କଥା କେବଳ ତାର ବାପାକୁ ଜଣାଥିଲା । ତାର ବାପା କେବେ କେବେ ସେଠି ଖାଦ୍ୟ ଇତ୍ୟାଦି ଦେଇ ଆସୁଥିଲେ । କିନ୍ତୁ ଦିନେ ସେ ସେଇ ଗୁହାରେ ଯାଇ ତାଙ୍କ ପୁଅ ପରିବର୍ତ୍ତେ ଗୋଟିଏ ବିରାଟ ଅଜଗରକୁ ଦେଖିଲେ । ସେ ତତ୍‌କ୍ଷଣାତ୍ ତାକୁ ଶରମାରି ମାରିଦେଲେ ଏବଂ ତା ପେଟ ଭିତରୁ ତାଙ୍କ ପୁଅର ଶବକୁ ଆବିଷ୍କାର କଲେ ।

ଭାରତବାସୀମାନେ ସାପ ବିଷୟରେ ଏହିପରି ବହୁତ ଅଲୌକିକ ବର୍ଣ୍ଣନା କରିଛନ୍ତି । ଏକ ପୌରାଣିକ କାହାଣୀରେ ବର୍ଣ୍ଣନା ଅଛି ଯେ ରାଜା ପରୀକ୍ଷିତଙ୍କୁ କାମୁଡ଼ିବା ପାଇଁ ଯେଉଁ ସାପ ଯାଉଥିଲା ସେ ରାସ୍ତାରେ ଜଣେ ପଣ୍ଡିତ ବ୍ୟକ୍ତିଙ୍କୁ ତାର ବିଷର ପ୍ରଭାବ ଦେଖାଇବା ପାଇଁ ଗୋଟିଏ ବୃକ୍ଷକୁ କେବଳ ନିଶ୍ବାସ ଦ୍ୱାରା ଜଳାଇ ଦେଇଥିଲା । ଏହି ପ୍ରକାର କଳ୍ପିତ କଥାକୁ ଆଧୁନିକ ବୈଜ୍ଞାନିକମାନେ ତିଳେ ମାତ୍ର ବିଶ୍ବାସ କରନ୍ତି ନାହିଁ ।

**ଗାତରେ ରହୁଥିବା ସର୍ପ**—ବହୁତ ସାପ ଅଛନ୍ତି ଯେଉଁମାନେ ସେମାନଙ୍କ ମରିବା ପର୍ଯ୍ୟନ୍ତ ଅଧିକାଂଶ ସମୟ ଗାତ ଭିତରେ ରହିଥାନ୍ତି । କେବଳ ବର୍ଷା ଋତୁରେ ସେମାନେ କେବେ କେବେ ବାହାରକୁ ଆସନ୍ତି । ଏମାନଙ୍କ ରହିବା ଖାଇବା ବଡ଼ ବିଚିତ୍ର । ଏହି ସାପର ମୁଣ୍ଡ କିଆର ମୁଣ୍ଡ ପରି ଛୋଟ ଅଟେ । ଏହାର ଦେହ ଛୋଟ ଛୋଟ କାତିରେ ଆବୃତ ଏବଂ ସବୁ କାତି ଏକ ପ୍ରକାର ଅଟେ । ସାଧାରଣତଃ ଅନ୍ୟ ସାପର ପେଟର କାତି ତା'ର ପିଠିର କାତିଠାରୁ ବଡ଼ ।

ଗାତରେ ରହୁଥିବା ସାପର ମୁହଁ ଛୋଟ । ଏଥିପାଇଁ ତାର ପାଟିକୁ ସେ ବେଶୀ ମେଲିପାରେ ନାହିଁ । ତେଣୁ ସେ କେବଳ ଛୋଟ ଛୋଟ କୀଟପତଙ୍ଗଙ୍କୁ ଖାଇ ଜୀବନଧାରଣ କରେ । କିଆ, ପିମ୍ପୁଡ଼ି ଏବଂ ଅନ୍ୟ କୀଟପତଙ୍ଗ ଏହାର ଖାଦ୍ୟ ଅଟେ । ଏହି ଜାତିର ଅନେକ ସାପ ମୋଟେ ଦେଖି ପାରନ୍ତି ନାହିଁ । କିନ୍ତୁ ସେମାନେ ଅନ୍ଧ ନୁହଁନ୍ତି । ତାଙ୍କର ଆଖି ବହୁତ ଛୋଟ ଏବଂ ଆଖି ଉପରେ ଗୋଟିଏ ପତଳା ଚମଡ଼ାର ଆବରଣ ଥାଏ । ଯାହା ଫଳରେ ସେମାନେ ଦେଖି ପାରନ୍ତି ନାହିଁ । ଏହି ସାପ ପନ୍ଦର ସେଣ୍ଟିମିଟରରୁ ବେଶୀ ଲମ୍ବା ନୁହେଁ ଏବଂ ଏହାର ଦାନ୍ତ ମଧ୍ୟ ବହୁତ ଛୋଟ । ଅଧିକାଂଶ ସାପର ତଳ ମାଡ଼ିରେ ଦାନ୍ତ ଥାଏ । କେତେକ ଅନ୍ଧ ସାପ ଅଛନ୍ତି ଯାହାର ଉପର ପାଟିରେ ବି ଦାନ୍ତ ନାହିଁ । ଏହି ସାପ ଉଷ୍ଣ ପ୍ରଦେଶରେ ଦେଖିବାକୁ ମିଳେ ।

ପଶ୍ଚିମ ଆଫ୍ରିକାର ଗାତ ତିଆରି କରି ରହୁଥିବା ସାପ ଅତ୍ୟନ୍ତ ବିଚିତ୍ର । ଏହାକୁ 'ଟେକିଲି ବରିଆ' ସାପ ବୋଲି କହନ୍ତି । ଏହି ସାପ ପ୍ରାୟ ଏକ ମିଟର ଲମ୍ବ ହୁଏ । ଏହା ବାଦାମି ରଙ୍ଗର ହୋଇଥାଏ ଏବଂ ଏହାର ଶରୀରରେ ହଳଦିଆ ରଙ୍ଗର ଗୋଲ ଚିହ୍ନ ଥାଏ । ଦିନ ସାରା ଏହି ସାପ କେବଳ ଗାତରେ ରହି ଆରାମ କରେ । କିନ୍ତୁ ସନ୍ଧ୍ୟା ବେଳେ ବାହାରକୁ ବାହାରି ଛୋଟ ଛୋଟ ମୂଷାକୁ ଧରି ଖାଏ ।

ଦକ୍ଷିଣ ଭାରତ ଓ ଶ୍ରୀଲଙ୍କାରେ ଆଉ ଏକ ପ୍ରକାର ସାପ ଦେଖିବାକୁ ମିଳେ । ଏହାକୁ ଏଠିକାର ଅଧିବାସୀମାନେ 'ଶୀଲ୍ଡଟେଲସ' ନାମରେ ଡ଼ାକନ୍ତି । ଏହାର ଲାଞ୍ଜ ଧାରରେ ଏକ ଚଉଡ଼ା ଓ ଚେପଟା କାତି ଥାଏ ।

ଦକ୍ଷିଣ ଆମେରିକାରେ ଏକ ପ୍ରକାର ସାପ ଦେଖିବାକୁ ମିଳେ । ଏହାର ଦେହ ଉପରେ ନାଲି ଓ କଳା ରଙ୍ଗର ଗାର ପଡ଼ିଥାଏ । ସେହି ସ୍ଥାନରେ ଥିବା ଅତ୍ୟନ୍ତ ବିଷାକ୍ତ କୋରାଲ ସାପ ସହିତ ଏହାର ଅନେକ ସାମଞ୍ଜସ୍ୟ ଅଛି ବୋଲି ଦୂରରୁ ଜଣାପଡ଼େ । ଏହି ବାହ୍ୟ ସାମଞ୍ଜସ୍ୟ ଅନୁକରଣ କହନ୍ତି । ଏହି ସାପ ବାଲୁକାମୟ ପ୍ରଦେଶରେ ଥାଏ ।

ଇରିକ୍ସ ଏକ ମରୁଭୂମିର ସାପ । ଏମାନେ ଦକ୍ଷିଣ ପୂର୍ବ ଇଉରୋପ, ଉତ୍ତର ତଥା ପୂର୍ବ ଆଫ୍ରିକା ଏବଂ ଦକ୍ଷିଣ ତଥା ମଧ୍ୟ ଏସିଆରେ ମିଳନ୍ତି । ଏହି ପ୍ରକାର ସାପ ସାତ ଜାତିର ଅଛନ୍ତି । ଏହି ସାପର ଆଖି ଛୋଟ, ଲାଞ୍ଜ ଛୋଟ ଓ ଚେପ୍ଟା ଅଟେ । ଭାରତୀୟ ଇରିକ୍ସ ସବୁଠୁଁ ବଡ଼ । ଏହାର ଲମ୍ବ ଏକ ମିଟରରୁ ବେଶୀ ହୁଏ ନାହିଁ ।

ଏହି ସାପ ଖୁବ୍ ବିଷହୀନ । ଭାରତରେ ସାପୁଆ କେଳାମାନେ ଏହାକୁ ଦୋମୁହାଁ ବୋଲି କହନ୍ତି । ସାପୁଆମାନେ ଏହାର ଲାଞ୍ଜରେ ଗୋଟିଏ ଛିଦ୍ର କରି ଦିଅନ୍ତି । ଏହାକୁ ସେମାନେ ତାର ଅନ୍ୟ ମୁହଁ ବୋଲି କହନ୍ତି ଏବଂ ଅଶିକ୍ଷିତ ଲୋକମାନଙ୍କୁ ଭୁଲ ବୁଝାଇ ଥାଆନ୍ତି ।

ଏହି ବିଷହୀନ ସାପକୁ ଭଗବାନ ତାର ଶତ୍ରୁ ଆକ୍ରମଣରୁ ବଞ୍ଚିବା ପାଇଁ ବହୁତ ପ୍ରକାର ଉପାୟ ଦେଇଛନ୍ତି । ଯେବେ କୌଣସି ଶତ୍ରୁ ଏହାକୁ ଆକ୍ରମଣ କରେ ତେବେ ସେ ନାଗସାପ ପରି ନିଜର ଫଣା ଟେକି ଫଁ ଫଁ କରେ । ଯଦି ସେ ଏଥିରେ ସଫଳ ନ ହୁଏ ତେବେ ସେହିକ୍ଷଣି ମାଟି ଉପରେ ପଡ଼ିଯାଇ ଧୀରେ ଧୀରେ ଗୁଳିବାକୁ ଆରମ୍ଭ କରେ । ସେତେବେଳେ ତାର ଗୁଳି କ୍ରମଶଃ ଏତେ ଧୀର ହୁଏ ଯେ ଜଣାଯାଏ ସେ ଯେପରି ଅସୁସ୍ଥ ହୋଇ ପଡ଼ୁଛି । ଶେଷରେ ସେ ଓଲଟି ପଡ଼େ ଏବଂ ପିଠିରେ ଭର ଦେଇ ଧୀର ଭାବରେ ପଡ଼ି ରହେ । ସେତେବେଳେ ଶତ୍ରୁର ବିଶ୍ବାସ ହୁଏ ଯେ ସେ ମରିଯାଇଛି ।

**ପାଣିସାପ**—ପାଣିରେ ପ୍ରାୟ ସବୁ ସାପ ପହଁରି ପାରନ୍ତି । କିନ୍ତୁ କେତେକ ଏପରି ସାପ ଅଛନ୍ତି ଯେଉଁମାନେ ପାଣି ଭିତରେ ଅଧିକାଂଶ ସମୟ ଅତିବାହିତ କରନ୍ତି । ଏହି ପାଣିସାପମାନଙ୍କ ମଧ୍ୟରୁ ଆନାକୋଣ୍ଡା ପାଣି ଅଜଗର ସବୁଠାରୁ ବଡ଼ । ଏହି ସାପ ବ୍ରାଜିଲ, ପେରୁ ତଥା ଗାଏନାରେ ବେଶୀ ପରିମାଣରେ ଦେଖାଯାନ୍ତି । ଏମାନଙ୍କର ବିଷୟରେ ବହୁତ ରୋମାଞ୍ଚକର କଳ୍ପିତ କାହାଣୀ ପ୍ରଚଳିତ ଅଛି ।

ହର୍ଡିବର୍ଗ ସାହେବ କହନ୍ତି ଯେ ଏହି ଭୟଙ୍କର ସାପ ଗୋଟିଏ ଘୋଡ଼ାକୁ ତାହାର ଆରୋହୀ ସହ ଅଥବା ଗୋଟିଏ ବଡ଼ ବଳଦକୁ ତାର ଶିଙ୍ଗ ସହ ମଧ୍ୟ ଗିଳି ଦେଇପାରେ ।

ସ୍ପେନର ଅଧିବାସୀମାନେ ଏହାର ଲମ୍ବ ପ୍ରାୟ ୨୫ ମିଟର ବୋଲି କହନ୍ତି । ସେମାନେ ତାକୁ 'ମାଟାଟୋରୋ' ନାମରେ ନାମିତ କରିଛନ୍ତି, ଯାହାର ଅର୍ଥ 'ବଳଦ ଖିଆ' ।

ବାସ୍ତବରେ ପାଣି ଅଜଗର ନ' ମିଟରରୁ ବେଶି ଲମ୍ବା ହୁଏ ନାହିଁ । ସାମୁଦ୍ରିକ ସାପକୁ ଛାଡ଼ି ଦେଲେ ଅନ୍ୟ ସବୁ ପାଣିସାପଙ୍କ ଭିତରେ ଆନାକୋଣ୍ଡା ପାଣିରେ ରହିବାକୁ ବେଶୀ ପସନ୍ଦ କରେ । ଏହା ତାର ମଥାକୁ ପାଣି ଉପରେ ଉଠାଇ ଭାସି ରହେ । ସମସ୍ତ ସମୟରେ ସେ ଜଳରେ ଆରାମରେ ସନ୍ତରଣ କରେ କିମ୍ବା କୂଳରେ ଥିବା ଗଛ ଡାଳରେ ଲଟକି ଯାଏ । ଏହି ଅବସ୍ଥାରେ ସେ ଶିକାର ସନ୍ଧାନରେ ଏ ପାଖ ସେ ପାଖକୁ ଦେଖୁଥାଏ ଯଦି କୌଣସି ବଣୁଆ ଘୁଷୁରି ତୃଷାର୍ତ୍ତ ହୋଇ ସେଠିକି ଆସେ ତେବେ ସେ ତାର ଶିକାର ହୋଇଯାଏ ।

କିନ୍ତୁ ଆନାକୋଣ୍ଡା ପକ୍ଷୀମାନଙ୍କୁ ବେଶୀ ଖାଏ । ଏକଦା ସେ ଏକ କୁମ୍ଭୀରକୁ ମଧ୍ୟ ଗିଳି ଦେଇଥିଲା । ବେଳେବେଳେ ମନୁଷ୍ୟ ବି ତାର ଶିକାର ହୋଇଯାଏ । ସେଥିପାଇଁ ଏହା ନିକଟରେ ରହିବାକୁ ମନୁଷ୍ୟମାନେ ଭୟ କରନ୍ତି ଏବଂ ସେହି ସ୍ଥାନ ଛାଡ଼ି ଚାଲି ଯାଆନ୍ତି ।

ଆପଣ ଜାଣି ଆଶ୍ଚର୍ଯ୍ୟ ହେବେ ଯେ ଏହି ସାପ ବିଷହୀନ ଅଟେ ଏବଂ ସେଥିପାଇଁ ସେ ତାର ଶିକାରକୁ ଗୁଡ଼େଇ ହୋଇ ତାର ଦେହର ଭିଡ଼ ନେଇ ତାକୁ ପେଷି ପକାନ୍ତି । ଲଣ୍ଡନର ଚିଡ଼ିଆଖାନାରେ ଏହି ପ୍ରକାର ଜୀବକୁ ବେଳେ ବେଳେ ଦେଖିବାକୁ ମିଳେ । ଏହି ପଶୁଶାଳାରେ ୧୯୨୩ଖ୍ରୀ:ଅ:ରେ ଏକ ସ୍ତ୍ରୀ ଆନାକୋଣ୍ଡା ଗୁଡ଼ିଏ ଛୁଆ ଦେଇଥିଲା । ସେମାନଙ୍କ ଲମ୍ବା ପ୍ରାୟ ଏକ ମିଟର ପର୍ଯ୍ୟନ୍ତ ଥିଲା ।

ଏହି ପାଣି ସାପମାନଙ୍କ ଭିତରୁ କେତେକଙ୍କ ମୁଣ୍ଡରେ ଶୁଣ୍ଢ ଭଳି ଥିବାରୁ ଏହାକୁ ଶୁଣ୍ଢ ସାପ ବୋଲି କହନ୍ତି । ଏମାନେ ଜାଭା, ନିଉଗିନି ତଥା ମାଳୟ ଦ୍ୱୀପ ପୁଞ୍ଜରେ ଅଧିକ ସଂଖ୍ୟାରେ ଦେଖିବାକୁ ମିଳନ୍ତି । ଶ୍ୟାମ ଦେଶବାସୀ ଢୋଲ ତିଆରି କରିବା ପାଇଁ ଏହି ସାପର ଚମଡ଼ାକୁ କାମରେ ଲଗାନ୍ତି ।

ପାଣି ସାପ ମଧ୍ୟରେ ସାମୁଦ୍ରିକ ସାପ ବେଶୀ ବିଷାକ୍ତ ଅଟେ । ଏହା ଅଧିକ ସଂଖ୍ୟାରେ ଭାରତ ମହାସାଗର ତଥା ପ୍ରଶାନ୍ତ ମହାସାଗରର ସମସ୍ତ ଅଞ୍ଚଳରେ ଦେଖିବାକୁ ମିଳେ । ଡକ୍ଟର ଥିଓଡୋରକଣ୍ଟର ଏସବୁ ସାପର ବିଷର ତୀବ୍ରତା ଉପରେ ବହୁତ ଗବେଷଣା କରିଛନ୍ତି । ତାଙ୍କର କହିବା ଅନୁସାରେ ଏହି ସାପ କାମୁଡ଼ିବା ପରେ ଗୋଟିଏ କୁକୁଡ଼ା ଆଠ ମିନିଟ, ଗୋଟିଏ ମାଛ ଦଶ ମିନିଟ ଏବଂ ଏକ କଇଁଚ କୋଡ଼ିଏ ମିନିଟ ଏବଂ ବିଷହୀନ ସାପ ଅଧଘଣ୍ଟା ମଧ୍ୟରେ ପ୍ରାଣତ୍ୟାଗ କରିଥିଲେ । ସାର ଯୋଶେଫ ଫାୟାର କହନ୍ତି ଯେ ଜଣେ କେଉଟକୁ ଏହି ସାପ କାମୁଡ଼ିବାର ଦେଢଘଣ୍ଟା ପରେ ସେ ମରି ଯାଇଥିଲା ।

ସାମୁଦ୍ରିକ ସାପର କାମୁଡ଼ିବା ଭଙ୍ଗୀ ମଧ୍ୟ ଭୟଙ୍କର । ସେ ପାଣିରୁ ବାହାରି ନିକଟରେ ଥିବା ବସ୍ତୁକୁ ପ୍ରଚଣ୍ଡ ବେଗରେ କାମୁଡ଼ି ଦିଏ । ସାମୁଦ୍ରିକ ସାପର ଲମ୍ବ ତିନି ମିଟରରୁ ଅଧିକ ହୋଇଥାଏ । ଏହାର ଲାଞ୍ଜ ଆହୁଲା ପରି ଚଉଡ଼ା ଅଟେ । ଏହାର ନାକ ମୁଣ୍ଡ ଉପରେ ରହିଥାଏ । ପ୍ରତ୍ୟେକ ନାକପୁଡ଼ା ଢାଙ୍କୁଣୀରେ ଆବୃତ ହୋଇଥାଏ । ଯେତେବେଳେ ସେ ପାଣି ଭିତରେ ଯାଏ ସେତେବେଳେ ଏହା ବନ୍ଦ ହୋଇଯାଏ ।

ସାମୁଦ୍ରିକ ସାପର ଆଖି ବହୁତ ସାନ । ପାଣିରୁ ବାହାରିଲେ ତାର ଆଖିର ଡ଼ୋଳା ସଙ୍କୁଚିତ ହୋଇଯାଏ । ଏହାକୁ ସୂର୍ଯ୍ୟାଲୋକରେ ଯଦି ରଖି ଦିଆଯାଏ ତେବେ ସେ ବହୁତ ଦୁଇର୍ବଳ ହୋଇଯାଏ । ଅଧିକାଂଶ ସାମୁଦ୍ରିକ ସାପର ପେଟରେ ଅତ୍ୟନ୍ତ ଛୋଟ ଛୋଟ କାତି ଥାଏ । ଏହି ସାପ ତାର କାତି ଏକ ସଙ୍ଗେ ଛାଡ଼େ ନାହିଁ । ଅଳ୍ପ ଅଳ୍ପ ଛାଡ଼େ । ଏହି ଜାତିର ସବୁ ସାପ ଛୁଆ ଦିଅନ୍ତି । ସ୍ତ୍ରୀ ସାପ ଏକ ବଡ଼ ପଥର ପାଖରେ ଛୁଆ ଦିଏ ଏବଂ ନିଜ ଦେହକୁ କୁଣ୍ଡଳାକୃତି କରି ତା ଭିତରେ ଛୁଆମାନଙ୍କୁ ରଖି କିଛି ଦିନ ବସି ରହେ । ମା' ସାପ ତାର ପିଲମାନଙ୍କୁ ଏହିରି ରକ୍ଷା କରୁଥାଏ । ଏହି ଜାତିର ସାପକୁ ଜୀବନ୍ତ ଧରିବା ବଡ଼ କଷ୍ଟକର ।

ପାଶ୍ଚାତ୍ୟ ଦେଶବାସୀ ତାଙ୍କର କେତେକ ପୁସ୍ତକରେ ଏକ ବିଶାଳ ସାମୁଦ୍ରିକ ସାପର ବର୍ଣ୍ଣନା କରିଛନ୍ତି । ନରଓ୍ୱେ ଦେଶର ପୌରାଣିକ କାହାଣୀ ଅନୁସାରେ, ସଂସାରରେ ଏକ ଅତି ବିଶାଳ ସାପ ଅଛି । ସେ ପୃଥିବୀକୁ ଘୂରିଆଉ୍ ଘେରି ରହିଛି । ଗୋଟିଏ ପୁସ୍ତକରେ ଏହି ସାପର ଆଉ ଏକ ବର୍ଣ୍ଣନା ଅଛି ଯେ ଏହାର ପିଠି ପାଣି ଉପରକୁ ଉଠିଛି । ଏହାର ପିଠିର ଘେରି ତିନି କିଲୋମିଟରରୁ ଅଧିକ । କୌଣସି କୌଣସି ସ୍ଥାନରେ ଛୋଟ ଛୋଟ ବୃଦ ମଧ୍ୟ ଦେଖାଯାଏ । ତା ଉପରେ ଛୋଟ ଛୋଟ ମାଛ ବୁଲୁଥାନ୍ତି । ତାକୁ ଦେଖିଲେ ଜଣାଯାଏ ଯେପରି ସେ ପାଣିରେ ପହଁରୁଛି । ତା' ପଛଭାଗରେ ଶିଙ୍ଗ ସମାନ ଉଠିଥିବା ଅଂଶ ଚଉଡ଼ା ଓ ମୋଟା ଅଟେ । ଏହା ଛୋଟ ଛୋଟ ଜାହାଜର ମାସ୍ତୁଲ ପରି ଉଚ୍ଚା ହୋଇଥାଏ । ଏହା ଦେଖି ମନେ ହୁଏ ଯେ ଏହା ଯେପରି ତାର ହାତ । ଯଦି କୌଣସି ଯୁଦ୍ଧ ଜାହାଜକୁ ସେ ଧରିନିଏ ତେବେ ସଙ୍ଗେ ସଙ୍ଗେ ତାକୁ ସମୁଦ୍ର ଭିତରକୁ ନେଇଯାଏ ।

ପାଦରୀ ପୋଣ୍ଡ ପିଡ଼ାନ ଆଉ ଏକ ସାପର ବର୍ଣ୍ଣନା କରି କହିଛନ୍ତି ଏହି ଜାତିର ସାପ ପ୍ରାୟ ଦୁଇଶହ ମିଟର ଲମ୍ବା । ୧୭୪୦ ମସିହାରେ ନରଓ୍ୱେ ଦେଶର କୂଳରେ ଏହିପରି ଏକ ସାପ ଦେଖା ଯାଇଥିଲା । ଏହି ପ୍ରକାର କେତେକ ଦାନବାକୃତି ସାପର ବର୍ଣ୍ଣନା ବିଜ୍ଞାନୀମାନେ ଦେଇଛନ୍ତି ସତ କିନ୍ତୁ ଏ ପର୍ଯ୍ୟନ୍ତ ଜୀବବିଜ୍ଞାନୀମାନେ ଏପରି ଜୀବ ଦେଖି ନାହାନ୍ତି । ଅଧିକାଂଶ ବିଜ୍ଞାନୀଙ୍କ ମତ ଯେ ଏହି ପ୍ରକାର ଜୀବଙ୍କ ଅସ୍ତିତ୍ୱ ମାତ୍ର କେତେକ ପୁସ୍ତକରେ ହିଁ ଅଛି ।

୧୮୭୦ ମସିହାରେ ଓଷ୍ଟବର୍ଣ୍ଣ ଜାହାଜର କ୍ୟାପ୍ଟେନ ସିସିଲି ଦ୍ୱୀପର କୂଳରେ ଏପରି ଏକ ବିଶାଳ ସାମୁଦ୍ରିକ ଜୀବକୁ ଦେଖିଥିଲେ । ଦୂରବୀକ୍ଷଣ ସାହାଯ୍ୟରେ ସେହି ଜୀବକୁ

କ୍ୟାପ୍‌ଟେନ ଅନୁଷଣ କରି କହିଛନ୍ତି ଯେ ଏହି ଜୀବର ମୁଣ୍ଡ ଅତ୍ୟନ୍ତ ବିଶାଳ ଏବଂ ତାର ପଛ ମଧ୍ୟ ବହୁତ ବଡ଼ । କ୍ୟାପଟେନଙ୍କ ସହଚରମାନେ ବି ଏହି ଜୀବକୁ ଦେଖିଥିଲେ ଏବଂ କହିଥିଲେ କି ଏହାର ପଛ ନ' ମିଟର ଲମ୍ବ ଏବଂ ପ୍ରାୟ ଦୁଇ ମିଟର ଉଚ୍ଚ । କିନ୍ତୁ କେହି ଏହାକୁ ଠିକ୍ ଭାବେ କହି ପାରି ନାହାନ୍ତି ଯେ ଏହା କି ପ୍ରକାର ଏବଂ କି ଜାତିର ଜୀବ ।

ସଂପ୍ରତି ଟି. ଏଚ୍. ଗୁଜ୍ କହିଛନ୍ତି ଯେ "ସମୁଦ୍ରରେ ଏପରି ଏକ ବିଶାଳ ପ୍ରାଣୀ ଅବଶ୍ୟ ଅଛି ଯାହାକୁ କି ଆଜି ପର୍ଯ୍ୟନ୍ତ କେହି ଦେଖି ନାହାନ୍ତି ବା ତାର ପତ୍ତା ମଧ୍ୟ ପାଇ ନାହାନ୍ତି । ମୋର ବିଶ୍ୱାସ ଯେ କୌଣସି ନା କୌଣସି ଦିନ ମନୁଷ୍ୟ ତାର ସନ୍ଧାନ ପାଇ ପାରିବ । ଏ. ଉ. ବାର୍ଟେଲେଟରଙ୍କର ମଧ୍ୟ ଏହି ମତ ।

**ଗଛ ଉପରେ ରହୁଥିବା ସାପ**—ଗଛ ଉପରେ ରହୁଥିବା ସାପ ବହୁତ ପ୍ରକାରର ହୋଇଥାଆନ୍ତି । ଏହି ଜାତିର ଅଧିକାଂଶ ସାପ ବୃକ୍ଷର ଡାଳ ଉପରେ ରହି ଥାଆନ୍ତି ଏବଂ ତଳକୁ କେବେ ଓହ୍ଲାନ୍ତି ନାହିଁ । ଏହି ଜାତିର କେତେକ ସାପ ଅଛନ୍ତି ଯେଉଁମାନେ କି ଛୋଟ ଛୋଟ ବୁଦା ଓ ବାଡ଼ମାନଙ୍କରେ ବିଚରଣ କରୁଥାନ୍ତି ।

କୋଡ଼େଦାର ସାପ ଏକ ବିଚିତ୍ର ସାପ ଅଟେ । ଏହା ଅଧିକ ସଂଖ୍ୟାରେ ଦକ୍ଷିଣ ପୂର୍ବ ଏସିଆରେ ଦେଖାଯାନ୍ତି । ଏହାର ଦେହ ଅତ୍ୟନ୍ତ ପତଳା । ଏମାନେ ଘାସପତ୍ର ଉପରେ ବିଚରଣ କରନ୍ତି । ଏହି ଜାତିରେ ଶାଗୁଆ ରଙ୍ଗର ସାପ ଅଧିକ ଦେଖିବାକୁ ମିଳେ । ଏମାନେ ସବୁଜ ଘାସରେ ରହିଲେ ମୋଟେ ଜାଣି ହୁଏ ନାହିଁ । କେତେକ ପଣ୍ଡିତଙ୍କ ମତରେ ଏହି ସାପ ସାଧା ସିଧା ଜୀବ ଅଟେ । କିନ୍ତୁ ଆଉ କେତେକ ପଣ୍ଡିତ ଏମାନଙ୍କ ସହ ଏକମତ ନୁହନ୍ତି । ସେମାନଙ୍କ ମତ ହେଲା ଯେ ଏହା ଅତ୍ୟନ୍ତ ଭୟଙ୍କର ଜୀବ ଅଟେ । ଜୀବ ବିଜ୍ଞାନୀମାନେ ଏହି ସାପକୁ କେତେବେଳେ ସରଳ ଭାବିଛନ୍ତି ତ ଆଉ କେତେବେଳେ ଭୟଙ୍କର ବୋଲି କହୁଛନ୍ତି । ସେମାନଙ୍କ ମତରେ ଏହି ସାପ ସମୟ ସମୟରେ ଆପଣାର ପ୍ରକୃତି ବଦଳି ଦେଇପାରେ ।

ଏକ ସମୟରେ ବେରିଜ ସାହେବ ଏକ ସାପୁଆ କେଳାର ପେଡ଼ିରୁ ତାକୁ କାଢ଼ି ଏହିପରି ଏକ ସାପକୁ ବାହାର କରି ଗୋଟିଏ ବୁଦାରେ ରଖି ଦେଇଥିଲେ ଏବଂ ତାର ଫଟୋ ନେବା ପାଇଁ ନିଜର କ୍ୟାମେରାକୁ ଠିକ୍ କଲେ । ସେ ପର୍ଯ୍ୟନ୍ତ ସେ ସାପ ଖୁବ୍ ଶାନ୍ତ ଥିଲା କିନ୍ତୁ ଯେମିତି ସେ ବୁଦା ପାଖରେ ପହଞ୍ଚିଲା ସଙ୍ଗେ ସଙ୍ଗେ ତାର ରୂପ ଭୟଙ୍କର ହୋଇଗଲା ଏବଂ ମୁହଁ ଖୋଲିଲା । ବେରିଜ ସାହେବ ଫଟୋ ଉଠାଇ ନେଲେ । ତା ପରେ ସମସ୍ୟା ଉପୁଜିଲା ଯେ କିପରି ତାକୁ ପୁଣି ପେଡ଼ିରେ ରଖାଯିବ । କେହି ଏହାକୁ ଧରି ପାରିଲେ ନାହିଁ । ତାର ପ୍ରସାରିତ ମୁହଁ ଦେଖି ସମସ୍ତେ ଡରିଗଲେ । ଶେଷରେ ଏକ ବାଡ଼ି ସାହାଯ୍ୟରେ ତାକୁ ଉଠାଇ ପେଡ଼ିରେ ରଖାଗଲା ।

ଆମେରିକାର କୋଚ୍ଡୋବାର ସାପ ନିଜର ଲାଞ୍ଜ ସାହାଯ୍ୟରେ ଖୁବ୍ ଶୀଘ୍ର ଦୌଡ଼ି ପାରେ । ଏହାର ଦେହର ବହୁତ ଚେଲା ଅଛି । ଲର୍ଡ଼ଡନ ସାହେବ ଏହି ସାପର ଏକ ସୁନ୍ଦର ବର୍ଣ୍ଣନା କରିଛନ୍ତି । ତାଙ୍କ ବର୍ଣ୍ଣନାନୁସାରେ ଏହି ସାପ ବାଡ଼ି ବଣିବୁଦାର ଛତି କରୁଥିବା ଜୀବମାନଙ୍କୁ ଖାଇଯାଏ । ଏହା ଭେଟଲ ସାପକୁ ସୁଦ୍ଧା ତାହାର ତଳୁ ଧରି ଧୀରେ ଧୀରେ ମାରିଦିଏ । ଯଦି କେହି ଏହି ସାପର ଅନୁସରଣ କରେ ତେବେ ସେ ଖୁବ୍ ଶୀଘ୍ର ଖସିଯାଇ ଗଛ ଉପରେ ଚଢ଼ିଯାଏ ଏବଂ ଗଛରେ ଥିବା କୋରଡ଼ରେ ତାର ମୁଣ୍ଡକୁ ପୂରେଇ ଦିଏ । ଏହି ଅବସ୍ଥାରେ ଯଦି କେହି ଏହାକୁ ଟଣା ଟଣି କରେ ତେବେ ତା' ଦେହ ମଝିରୁ ଦୁଇଖଣ୍ଡ ହୋଇଯାଏ ।

ଆପଣ ଏହା ଜାଣି ଆଶ୍ଚର୍ଯ୍ୟ ହେବେ ଯେ କେତେକ ସାପ ଉଡ଼ ମଧ୍ୟ ପାରନ୍ତି । ଦକ୍ଷିଣ ଭାରତ ତଥା ଏସିଆର ଅନ୍ୟ ଉଷ୍ଣ ପ୍ରଦେଶରେ ଉଡ଼ୁଥିବା ସାପ ଦେଖିବାକୁ ମିଳେ । ଏହି ସାପ ଏକ ଗଛ ଡାଳରୁ ଅନ୍ୟ ଏକ ଗଛର ଡାଳକୁ ଲମ୍ଫ ଦେଇପାରେ । ଉଡ଼ୁଥିବା ସମୟରେ ଏହା ତାର ଦେହକୁ ସିଧା ରଖେ ଏବଂ ପେଟ ଉପରେ କିଛି ଅଂଶ ପ୍ରସାରିତ କରିଦିଏ । ସେତେବେଳେ ତାର ଦେହ ଚୁଡ଼ିଆ ପରି ହୋଇଯାଏ । ଏହା ତେରଛା ଭାବରେ ତଳ ଆଡ଼କୁ ଉଡ଼ିପାରେ । ମେଜର ଫ୍ଲାବର ସାହେବ ଏପରି ଗୋଟିଏ ସାପକୁ ଗୋଟିଏ ଘରର ଉପର ମହଲର ଝରକାରୁ ଅଢ଼େଇ ମିଟର ଦୂରରେ ଥିବା ଏକ ଗଛ ଡାଳକୁ ଡେଇଁ ପଡ଼ିବାର ଦେଖିଥିଲେ ।

ଉଡ଼ୁଥିବା ସାପ ଦେଖିବାକୁ ବହୁତ ସୁନ୍ଦର । ଏହାର ରଙ୍ଗ ଗାଢ଼ ସବୁଜ ଏବଂ ତାହା ଉପରେ ହଳଦିଆ, ନାଲି ଓ ନାରଙ୍ଗୀ ରଙ୍ଗର ଚିହ୍ନ ହୋଇଥାଏ ।

ଉପରୋକ୍ତ ସମସ୍ତ ଜାତିର ଉଡ଼ୁଥିବା ସାପ ବିଷହୀନ । ବିଷାକ୍ତ ସାପ ମଧ୍ୟରୁ ବୁମସ୍ଲାଙ୍ଗ୍, ମାମ୍ବା ତଥା କିକଲାଣ୍ଡ ବୃକ୍ଷସାପରେ ଅନ୍ତର୍ଭୁକ୍ତ । ବୁମ୍ସ୍ଲାଙ୍ଗ୍ ସାପ ପ୍ରାୟ ଦେଢ଼ମିଟର ପର୍ଯ୍ୟନ୍ତ ଲମ୍ବା ହୁଏ । ଏମାନଙ୍କୁ ଦକ୍ଷିଣ ଏସିଆର ଉଷ୍ଣ ପ୍ରଦେଶରେ ଦେଖିବାକୁ ମିଳେ । ଏକ ସମୟରେ ଲୋକମାନେ ଏହାକୁ ବିଷହୀନ ସାପ ବୋଲି ଭାବୁଥିଲେ । ଲଣ୍ଡନର ଚିଡ଼ିଆଖାନାରେ ଥିବା ଏହି ଜାତିର ସାପ ଉପରେ ଲୋକମାନେ ହାତ ଦେଉଥିଲେ । କିନ୍ତୁ ପରେ ପରୀକ୍ଷା କରି ଦେଖାଗଲା ଯେ ଏମାନେ ବିଷାକ୍ତ ଅଟନ୍ତି । ଯଦିଓ ଏହାର ବିଷ ଦାନ୍ତ ବହୁତ ସାନ ତଥାପି ଛୋଟ ଛୋଟ ଜୀବକୁ ମାରିବା ପାଇଁ ଏହାର ବିଷ ଯଥେଷ୍ଟ ତୀବ୍ର । ମନୁଷ୍ୟ ପକ୍ଷରେ ମଧ୍ୟ ଏହି ବିଷ ଯଥେଷ୍ଟ ଅଟେ । କେତେକ ବର୍ଷ ପୂର୍ବେ ଏହି ସାପ ଗୋଟିଏ ମନୁଷ୍ୟକୁ ତାର ବାହୁରେ କାମୁଡ଼ି ଦେଇଥିଲା । କିଛି ସମୟ ପରେ ବିଷ ଜଣିଲେ ଏବଂ ବିଷ କ୍ରିୟାର ଲକ୍ଷଣ ପ୍ରକାଶ ପାଇଲା ଓ ରୋଗୀର ଦଶା ପ୍ରତି ମୁହୂର୍ତ୍ତରେ ଶୋଚନୀୟ ହେବାକୁ ଲାଗିଲା । ତିନି ଦିନ ପରେ ଡାକ୍ତର ତାର ଜୀବନ ଆଶା ଛାଡ଼ି ଦେଲେ । କିନ୍ତୁ ଭାଗ୍ୟବଶତଃ ରୋଗୀ କୌଣସି ପ୍ରକାରେ ବଞ୍ଚିଗଲା । ତିନି

ମାସ ପରେ ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲା । ବରଙ୍କ କଲେ, ବୁମସ୍ଲାଙ୍ଗ ନଜର ହେବାକୁ ଫୁଲାଇ ଦିଏ ଏବଂ ଶତ୍ରୁକୁ ଡରାଏ । ବାହ୍ୟ ଆକୃତିରୁ ଯଦିଓ କୋଡ଼େଇବାର ସାପ ସହିତ ଏହାର ସାମଞ୍ଜସ୍ୟ ଅଛି ତଥାପି ଏହାକୁ ଶୀଘ୍ର ଜାଣିହୁଏ ନାହିଁ । ଏହାର ଦେହର ରଙ୍ଗ ସବୁଜ । ତେଣୁ ବାଡ଼ ଓ ବୁଦା ପାଖରେ ରହିଲେ ଏହାକୁ ଜାଣି ହୁଏନାହିଁ ।

ସବୁଜରଙ୍ଗର ମାମ୍ବା ସାପ ଅତ୍ୟନ୍ତ ବିଷାକ୍ତ ଅଟେ । ଦକ୍ଷିଣ ତଥା ଉଷ୍ଣ ଆଫ୍ରିକାର କେତେକାଂଶରେ ଏହି ସାପ ଦେଖିବାକୁ ମିଳେ । ଏହା ତିନି ମିଟର ଲମ୍ବା ଅଟେ । ଏଠିକାର ଅଧିବାସୀମାନେ ଏହାର ଭୟଙ୍କର ରୂପ ପାଇଁ ଏହାକୁ ଖିଷଣ ଡ଼ରନ୍ତି ଏବଂ ଏହି ସାପ ଥିବା ସ୍ଥାନକୁ କଦାପି ଯାଆନ୍ତି ନାହିଁ । ଏଠିକାର ଅଧିବାସୀମାନଙ୍କର ଅନ୍ଧବିଶ୍ୱାସ ଯେ ଯଦି କେହି ମାମ୍ବା ସାପକୁ ମାରିବେ ତେବେ ତାଙ୍କ ଦେବତା ରାଗିଯିବେ । ସେଥିପାଇଁ ଏମାନେ ମାମ୍ବା ସାପକୁ ଶ୍ରଦ୍ଧାପୂର୍ଣ୍ଣ ଦୃଷ୍ଟିରେ ଦେଖନ୍ତି । ଅନ୍ୟ ସାପ ପରି ଏହା ପାଖକୁ ଆସୁଥିବା ଲୋକଙ୍କୁ ଆକ୍ରମଣ କରେ ଏବଂ କାମୁଡ଼ିବା ପାଇଁ ଗୋଡ଼ାଇ ଆସେ । ଏହାର ପ୍ରଖର ଗୁଲିକୁ ଦେଖି ତାର ପ୍ରତିହିଂସା ପ୍ରକୃତି କେତେ ପ୍ରବଳ ତାହା ଜଣାପଡ଼େ । ଏହା କାମୁଡ଼ିଲେ ମନୁଷ୍ୟ ଶୀଘ୍ର ମରିଯାଏ । ସେଥିପାଇଁ ଏହାଠାରୁ ରକ୍ଷା ପାଇବା ପାଇଁ ଶୀଘ୍ର ଶୀଘ୍ର ସେଠୁ ପଳେଇ ଯିବାକୁ ପଡ଼େ ।

ଅଣ୍ଡା ଖାଉଥିବା 'ଡ଼େସୋଡେଲଟିସ' ସାପ ଏକ ବିଚିତ୍ର ପ୍ରକାରର ବୃକ୍ଷସାପ ଅଟେ । ଏହା ଉଷ୍ଣ ତଥା ଦକ୍ଷିଣ ଆଫ୍ରିକାରେ ଦେଖାଯାଏ । ଏହା କେବଳ ଷାଠିଏ ସେଣ୍ଟିମିଟର ଲମ୍ବା ହୁଏ । ଏହାର ଅଙ୍ଗ ପ୍ରତ୍ୟଙ୍ଗର ଗଠନ ଅତ୍ୟନ୍ତ ବିଚିତ୍ର ପ୍ରକାରର ଅଟେ । ଏହାର ଗଳାରେ କେତେକ ଦାନ୍ତ ଦେଖିବାକୁ ମିଳେ । ଏହାକୁ 'ଥ୍ରୋଟଟିଥ' ବୋଲି କହନ୍ତି । ଏମାନେ ପକ୍ଷୀର ଅଣ୍ଡା ଖାଇ ଜୀବନ ଯାପନ କରନ୍ତି । ଏହାର ଦାନ୍ତ ବହୁତ ସାନ ଓ ସଂଖ୍ୟାରେ ଅଳ୍ପ । ଏହା ଅଣ୍ଡାକୁ ପୁରା ଗିଳିଦିଏ । ଯେତେବେଳେ ଅଣ୍ଡା ଗଳା ପର୍ଯ୍ୟନ୍ତ ପହଞ୍ଚିଯାଏ ସେତେବେଳେ ସେହି ଦାନ୍ତ ଅଣ୍ଡାକୁ ଫୁଟେଇ ଦିଏ । ଅଣ୍ଡାର ନରମ ଅଂଶ ପାକସ୍ଥଳୀକୁ ଚାଲିଯାଏ ଓ କଠିନ ଅଂଶକୁ ସାପ ତାହାର ମୁହଁ ବାଟେ ବାହାର କରି ଦିଏ । ସାଧାରଣତଃ ଏହି ସାପ ପକ୍ଷୀର ଅଣ୍ଡା ଉପରେ ଜୀବନ ନିର୍ବାହ କରେ । କିନ୍ତୁ ଯଦି ଅଣ୍ଡା ନ ମିଳେ ତେବେ ସେ ନିକଟରେ ଥିବା ଖଲା ଘରକୁ ଚାଲିଯାଏ ଓ କୁକୁଡ଼ା ଇତ୍ୟାଦିର ଅଣ୍ଡାକୁ ଖାଇଦିଏ ।

ତାହାର ମୁହଁର ଆକାର ବଡ଼ ହୋଇଥିବା ହେତୁ ସେ ଅତି ବଡ ଅଣ୍ଡାକୁ ବି ଗିଳିଦିଏ । ଦୂରରୁ ଦେଖିଲେ ଜଣାପଡ଼େ ଯେପରି ଜଣେ ଲୋକ ଫୁଟବଲକୁ ଗିଳି ଦେଉଛି । ଗିଳିଥିବା ଅଣ୍ଡାଟି 'ଥ୍ରୋଟ୍‌ଟିଥ' ଯାଏ ପହଞ୍ଚିବା ପର୍ଯ୍ୟନ୍ତ ସାପର ଗଳା ଏପରି ଫୁଲିଥାଏ ଯେ ମନେହୁଏ ଯେପରି ତାର ଗଳା ଫାଟିଯିବ ।



ଶରଗପୁ ନାଗସାପ



ପାଣି କାଦୁଅରେ
ରହୁଥିବା ସାପ



କଉଡ଼ିଆ ଚକସାପ



ବିଷାକ୍ତ ସାପ



ବେଙ୍ଗ ଧରିଥିବା ସାପ



ଜଳୀୟ ସାପ



ଫଣାଟେକ ଖେଳୁଥିବା ସାପ



ଦକ୍ଷିଣ ଆମେରିକାପୃ ସାପ



ଗଛ ଉପରେ ରହୁଥିବା ସାପ



ସାପର ମୁଣ୍ଡକୁ ଧରିଥିବା ନେଉଳ



ପାଣି କାଦୁଅରେ ରହୁଥିବା ସାପ



ଆମେରିକାର ରେଟେଲ୍ ସାପ



ଧୂଳରେ ରହୁଥିବା ଢଷାଲୁ ସାପ



ଅଫ୍ରିକାର ସାପ



ପାଣିରେ ରହୁଥିବା ସାପ



ଫଣା ଟେକିଥିବା ନାଗସାପ



ମରୁଭୂମିର ସାପ



ପାଣିରେ ରହୁଥିବା ଆମେରିକାର ସାପ



ଗାଛରୁ ବାନ୍ଧାହୁଥିବା ସାପ



ଚେପ୍‌ଟାମୁହଁ ଥିବା ସାପ—ଅଣ୍ଡା ସହିତ



ବେକରେ କଲର ଥିବା ଝିଟିପିଟି



ରଙ୍ଗ ପରିବର୍ତ୍ତନ କରିପାରୁଥିବା ମରୁଭୂମିର ଝିଟିପିଟି



ଉଡ଼ିପାରୁଥିବା ଝିଟିପିଟି



ଦେହରେ ପଟିପରି ଚିହ୍ନ ଥିବା ଆମେରିକାର ଝିଟିପିଟି



ଧୂଳିରେ ଲୁଚିଥିବା ଝିଟିପିଟି



ରଙ୍ଗ ପରିବର୍ତ୍ତନ କରିପାରୁଥିବା ଆମେରିକାର ଝିଟିପିଟି



ଦେହରେ କଣ୍ଟାଥିବା ଝିଟିପିଟି



ସନ୍ତୁମୁଣ୍ଡ ଥିବା ଝିଟିପିଟି



ରଙ୍ଗ ପରିବର୍ତ୍ତନ କରୁଥିବା ପଶ୍ଚିମ ଭରତୀୟ ଝିଟିପିଟି



ବକ୍ଷସ ଗୋଧି



ଦେହରେ ଗାରଥିବା ଝିଟିପିଟି



ସିନ୍ଧୁଘୋଟକ ପରି ମୁହଁଥିବା ଝିଟିପିଟି



ରଙ୍ଗ ପରିବର୍ତ୍ତନକ୍ଷମ ମରୁଭୂମିର ଝିଟିପିଟି



ଗୋଧି-ଶିଶୁ



ବିଷାକ୍ତ ଝିଟିପିଟି



ମୋଟରର ଚଢ଼ିଥିବା ମେକ୍ସିକୋର ଝିଟିପିଟି



ରଙ୍ଗ ପରିବର୍ତ୍ତନ କରିପାରୁଥିବା ଝିଟିପିଟି



ଲାଞ୍ଜ ସାହାଯ୍ୟରେ ମାରିପାରୁଥିବା ଝିଟିପିଟି



ଏଣ୍ଡୁଅ



ଜଙ୍ଗଲି ଝିଟିପିଟି





ରଙ୍ଗ ପରିବର୍ତ୍ତନ କରିପାରୁଥିବା ଝିଟିପିଟି



ଲାଞ୍ଜରେ କଣ୍ଟାଥିବା ଝିଟିପିଟି



ଆମେରିକାର କୁମ୍ଭୀର (ମଗର)
ଏବଂ ଘଡ଼ିଆଳ



ଭରଙ୍କପୁ ଘଡ଼ିଆଳର ମୁହଁ



ଲୁଣି ପାଣିରେ
ବାସ କରୁଥିବା ଘଡ଼ିଆଳ



ପଶ୍ଚିମ ଅଫ୍ରିକାର ଘଡ଼ିଆଳ



ମିସ୍ରୀ ଘଡ଼ିଆଳ



ପାଟି ମେଲ କରିଥିବା ଘଡ଼ିଆଳ



ନୀଳ ନଦୀର ଘଡ଼ିଆଳ



ଲୁଣି ପାଣିରେ ରହୁଥିବା ଘଡ଼ିଆଳ



ଅଣ୍ଡାରୁ ବାହାରୁଥିବା ଘଡ଼ିଆଳ



ନୀଳ ନଦୀର ଘଡ଼ିଆଳ



ଲୁଣି ପାଣିରେ ରହୁଥିବା ଘଡ଼ିଆଳ



ଅଣ୍ଡାରୁ ବାହାରୁଥିବା ଘଡ଼ିଆଳ



କାଦୁଅରେ ରହୁଥିବା କଇଁଛ

ପୋଖରୀରେ ରହୁଥିବା କଇଁଛ

ଛାତିପର ଦେଖାଯାଉଥିବା କଇଁଛ



ଛେଦୁ ଆଲୁମା କଇଁଛ



ବଗଝକାସ୍ପ କଇଁଛ



ବଶାଙ୍କ କଇଁଛ



ପାଣିରେ ପହଁରୁଥିବା କଇଁଛ

# ସାପର ଶତ୍ରୁ

ସାପର ଅନେକ ପ୍ରକାର ଶତ୍ରୁ ଅଛନ୍ତି । କେବଳ ମନୁଷ୍ୟ ସେମାନଙ୍କୁ ମାରନ୍ତି ନାହିଁ, ଅନ୍ୟ ସ୍ତନ୍ୟପାୟୀ ଜୀବ ତଥା ପକ୍ଷୀମାନେ ବି ଏହାକୁ ଶିକାର କରନ୍ତି । ଏହା ବ୍ୟତୀତ ଏମାନଙ୍କର ଜ୍ଞାତିବନ୍ଧୁମାନେ ବି ନିଜ ନିଜ ଭିତରେ ଜଣେ ଅନ୍ୟ ଜଣକୁ ଖାଇଦିଏ । ଏପରି କି ଛୋଟ ଛୋଟ ପିମ୍ପୁଡ଼ିମାନେ ବି ଏମାନଙ୍କୁ ଆକ୍ରମଣ କରି ଖାଇ ଯାଆନ୍ତି ।

ନେଉଳ ସାପର ପରମ ଶତ୍ରୁ ଅଟେ । ନେଉଳ ଅତ୍ୟନ୍ତ ଚତୁର ଏବଂ ଆକ୍ରମଣ ସମୟରେ ସେ ଉଗ୍ର ରୂପ ଧାରଣ କରିଥାଏ । ଝିଙ୍କ ପରି ନେଉଳ ଉପରେ ମଧ୍ୟ ସାପ ବିଷର ପ୍ରଭାବ ପଡ଼େ ନାହିଁ ବୋଲି କୁହାଯାଇଛି । ଆଧୁନିକ ଯୁଗରେ ନେଉଳ ଉପରେ ବିଷ ପ୍ରୟୋଗ କରି ଜଣା ଯାଇଛି ଯେ ଯଦି କୌଣସି ବିଷାକ୍ତ ସାପ ନେଉଳକୁ ପ୍ରକୃତରେ କାମୁଡ଼ିଦିଏ ତେବେ ସେ ବଞ୍ଚି ପାରିବ ନାହିଁ । ଭାଗ୍ୟବଶତଃ ନେଉଳକୁ ସାପ କାମୁଡ଼ିବା ସମ୍ଭବ ନୁହେଁ କାରଣ ସେ ଏତେ ଦ୍ରୁତ ଚଳବୁଲ କରିପାରେ ଯେ ସାପ ଏହାକୁ କାମୁଡ଼ିବା ପାଇଁ କୌଣସି ପ୍ରକାର ସୁଯୋଗ ପାଏ ନାହିଁ । ଭାରତବାସୀଙ୍କ ଅନ୍ଧବିଶ୍ୱାସ ଯେ ଯଦି ନେଉଳକୁ ସାପ କାମୁଡ଼େ ତେବେ ସେ ଏକ ପ୍ରକାର ବନୌଷଧି ଖାଇନିଏ । କିନ୍ତୁ ଏ କଥା ସତ ନୁହେଁ । ସାପ ଓ ନେଉଳର ଯୁଦ୍ଧ ପ୍ରସିଦ୍ଧ । ଅନେକ ଲେଖକ ଏହାର ବର୍ଣ୍ଣନା କରିଛନ୍ତି । ଏ ସମସ୍ତଙ୍କର ମତରେ ନେଉଳ ଅତ୍ୟନ୍ତ ଚତୁର ଏବଂ ସର୍ବଦା ନିଜର ଚତୁରତା ଦ୍ୱାରା ସାପ ବିଷରୁ ନିଜକୁ ବଞ୍ଚାଇ ରଖେ । ନେଉଳ ସାପର ଚାରି ପାଖରେ ଦୌଡ଼ୁଥାଏ ଏବଂ ସମୟ ପାଇଲେ ସାପକୁ ଖଣ୍ଡ ଖଣ୍ଡ କରିଦିଏ । କେତେକ ସମୟ ପରେ ସାପ କ୍ଳାନ୍ତ ହୋଇ ମାଟିରେ ଗଡ଼ିଯାଏ । ନେଉଳ କିନ୍ତୁ ସାପଠାରୁ ଯଥେଷ୍ଟ ଦୂରରେ ଥାଏ । ମିଶର ଦେଶର ନେଉଳ ଅତ୍ୟନ୍ତ ପବିତ୍ର ଅଟେ । ମିଶର ଦେଶରେ ଏହାକୁ 'ଇକ୍ୟୁମୋନ' ନାମରେ ଡ଼ାକନ୍ତି । ପ୍ରାଚୀନ ମିଶର ଦେଶବାସୀ ଏହାକୁ ଶ୍ରଦ୍ଧାପୂର୍ଣ୍ଣ ଦୃଷ୍ଟିରେ ଦେଖୁଥିଲେ । କାରଣ ସେ କୁମ୍ଭୀରମାନଙ୍କ ଅଣ୍ଡା ଖାଇଯାଉଥିଲା ଯାହା ଫଳରେ ସେମାନଙ୍କ ସଂଖ୍ୟା ବଢ଼ି ନ ଥିଲା । ମିଶରର ପ୍ରାଚୀନ ଶହରରେ ନେଉଳର ଶବ ସବୁ ଦେଖିବାକୁ ମିଳେ । ହେରୋଡ଼ୋଟାସ କହିଛନ୍ତି ଯେ ନେଉଳର ଶବକୁ ମିଶରର ସବୁ ପବିତ୍ର ସ୍ଥାନରେ କବର ଦିଆ ଯାଉଥିଲା ।

ଝିଙ୍କର ବିଶେଷ ଖାଦ୍ୟ ସାପ ଅଟେ । ଝିଙ୍କଠାରୁ ବିଷାକ୍ତ ସାପର ବଞ୍ଚିବା ବଡ଼ କଷ୍ଟକର । ଏହା ଉପରେ ବିଷର କୌଣସି ପ୍ରଭାବ ପଡ଼େ ନାହିଁ ବୋଲି କୁହାଯାଏ ।

ଜୀବବିଜ୍ଞାନୀମାନେ ଏହାର ଶରୀରକୁ ଭଲ ଭାବରେ ନିରୀକ୍ଷଣ କରି ଦେଖିଛନ୍ତି । ସେମାନଙ୍କ ମତ ହେଲା ଯେ ଝିଙ୍କ ମଧ୍ୟ ନେଉଳ ପରି ଚତୁରତା ସହ ଶତ୍ରୁକୁ ମାରି ଦିଏ । ସାପ ଦଂଶନରୁ ସର୍ବଦା ସେ ନିଜକୁ ବଞ୍ଚାଇ ରଖିପାରେ । ଯଦି କୌଣସି ଝିଙ୍କ ସାପକୁ ଦେଖିନିଏ ତ ପ୍ରଥମେ ସେ ସ୍ଥିର ହୋଇ ଠିଆ ହୋଇଯାଏ । ତା' ପରେ ସେ ଶତ୍ରୁକୁ ଆକ୍ରମଣ କରେ ଓ ତା' ଦେହରୁ କିଛି ମାଂସ କାମୁଡ଼ି ପକାଏ । ଏହାପରେ ସେ ନିଜେ ଲେଉଟି ଯାଇ ଦେହ ଭିତରେ ମୁଖକୁ ଲୁଚାଇ ଚୁପ୍ ଚାପ୍ ପଡିଥାଏ । ଇତି ମଧ୍ୟରେ ସାପ ରାଗିଯାଇ ତାକୁ କାମୁଡ଼ିବା ପାଇଁ ଦୌଡ଼େ କିନ୍ତୁ ତାହାର କଣ୍ଟାଯୁକ୍ତ ଦେହରେ ଆଘାତ ପାଇ ଫେରିଆସେ । ପୁଣି ଝିଙ୍କ ମୁଣ୍ଡ ଉଠାଇ ତାକୁ କାମୁଡ଼ି ଦିଏ । ଏହିପରି ତିନି ଚାରିଥର ପରେ ସାପ ମରିଯାଏ ।

ଦକ୍ଷିଣ ତଥା ମଧ୍ୟ-ଆମେରିକାରେ ଏକ ପ୍ରକାର ସ୍ତନ୍ୟପାୟୀ ଜୀବ ଦେଖାଯାଏ ଯାହାର ନାମ 'ଆର୍ମାଡିଲୋ' । ଏହା ମଧ୍ୟ ସାପର ଶତ୍ରୁ ଅଟେ । ଏହାର ଶରୀର ଏକ ଟାଣ ଚର୍ମ ଦ୍ୱାରା ଏପରି ଆବୃତ ଯେ ସାପ ଏହାକୁ କାମୁଡ଼ି ପାରେ ନାହିଁ । 'ଆର୍ମାଡ଼ିଲୋ' ତାର ତୀକ୍ଷ୍ଣ ଦାନ୍ତ ଦ୍ୱାରା ସାପକୁ ଖଣ୍ଡ ଖଣ୍ଡ କରିଦିଏ ।

ଆଫ୍ରିକାରେ 'ଜୋରିଲ୍' ନାମକ ଏକ ପ୍ରକାର ଜୀବ ଦେଖିବାକୁ ମିଳେ । ଏହା ଠେକୁଆ ପରି ଦେଖିବାକୁ ଏବଂ ଏହାର ଦେହ କଳା ଓ ଧଳା ଲୋମରେ ଆବୃତ ଥାଏ । ନାଗ ତଥା ପଫ୍ଏଡ଼ର ସାପର ଏହା ଶତ୍ରୁ ଅଟେ । ଆକ୍ରମଣ ସମୟରେ ଜୋରିଲ୍ ଦେଖିଲେ ଭୟଭୀତ ହେଲାଭଳି ଜଣାଯାଏ । ଜଙ୍ଗଲୀ ଘୁଷୁରି ମଧ୍ୟ ସାପକୁ ଖାଇଯାଏ ।

କେତେକ ପକ୍ଷୀ ମଧ୍ୟ ସାପର ଶତ୍ରୁ ଅଟନ୍ତି । ସେକ୍ରେଟାରୀ ପକ୍ଷୀ ସାପକୁ କଦାପି ଜୀବିତ ଛାଡ଼େ ନାହିଁ । ଏହା ଆଫ୍ରିକାରେ ଦେଖିବାକୁ ମିଳେ ।

ଅଷ୍ଟ୍ରେଲିଆର କଢ଼ଆଲା ପକ୍ଷୀ ସାପର ପରମ ଶତ୍ରୁ । ଏହି ପକ୍ଷୀ ଏପରି ଏକ ବିଚିତ୍ର ଜୀବ ଯେ ମଝିରେ ମଝିରେ ସେ ହସେ । ସେକ୍ରେଟାରୀ ପକ୍ଷୀ ପରି ଅନ୍ୟ କୋଡ଼ିଆଲା ପକ୍ଷୀମାନଙ୍କ ଶିକାର ସେଠିକାର ସରକାର ନିଷିଦ୍ଧ କରିଛନ୍ତି ।

ସାରସ ପକ୍ଷୀ ପାଇଁ ସାପ ଏକ ଭୋଜ୍ୟ ପଦାର୍ଥ ଅଟେ । ଆମେରିକାରେ ଜଙ୍ଗଲୀ ସାରସମାନେ ଦଳ ଗଠନ କରି ଗୋଟିଏ ସ୍ଥାନରେ ଜମା ହୋଇଥାନ୍ତି । ଏମାନେ ମାଛ ଓ ପାଣିସାପମାନଙ୍କୁ ଆକ୍ରମଣ କରନ୍ତି । ଏମାନେ କାଦୁଅ ଉପରେ ଏପରି ଚାଲନ୍ତି ଯେ ସେଠାରେ ଥିବା ସବୁ ଜୀବ ଉପରକୁ ଉଠି ଆସନ୍ତି ଓ ସେମାନଙ୍କୁ ଏମାନେ ଖୁବ୍ ଶୀଘ୍ର ଧରି ଖାଇ ନିଅନ୍ତି । ଅଡ଼ୁବୋନ୍ଙ୍କ କଥାଅନୁସାରେ ଦଶ ପନ୍ଦର ମିନିଟ ମଧ୍ୟରେ ଅନେକ ମାଛ, ଛୋଟ କୁମ୍ଭୀର ତଥା ପାଣିସାପ ପାଣି ଉପରେ ପହଁରିବାକୁ ଆରମ୍ଭ କରନ୍ତି ଓ ଏହି ପକ୍ଷୀ ଖୁବ୍ ଆନନ୍ଦର ସହିତ ଏମାନଙ୍କୁ ଖାଏ ଓ ପୁଣି କୂଳକୁ ଫେରିଆସେ । ଏକ ଘଣ୍ଟା ପର୍ଯ୍ୟନ୍ତ ସେ ଏହିପରି ଆରାମ କରି ପାଣିରୁ କୂଳକୁ ଏବଂ କୂଳଠାରୁ ପାଣିକୁ ଯାଏ ଓ କାଦୁଅ ଚକଟି ତାହାର ଆହାର ଖାଇ ପେଟ ପୁରାଇଥାଏ ।

ବର୍ତ୍ତମାନ ସେହି ସାପର ବର୍ଣ୍ଣନା କରାଯାଉଛି ଯେ କି ଅନ୍ୟ ବିଷାକ୍ତ ସାପକୁ ଖାଇଯାଏ । ଏହି ଶ୍ରେଣୀର ଅନ୍ତର୍ଗତ ଆମେରିକାର କିଂସ୍ନେକ ପ୍ରଥମ ସ୍ଥାନ ଅଧିକାର କରିଛି । ଏହା ଉତ୍ତର ଆମେରିକାର ବିଷାକ୍ତ ତଥା ବିଷହୀନ ସାପକୁ ଗିଳିଦିଏ । ଏହି ସାପ ମନୁଷ୍ୟ ତଥା ଅନ୍ୟ ପ୍ରାଣୀଙ୍କର ବହୁତ ସେବା କରେ । ରେଟଲ ସାପ, କପର ହେଡ଼ ସାପ ତଥା ମୁକାସିନ ସାପ ଏହାର ଭୋଜନ ପାଇଁ ପସନ୍ଦ ଯୋଗ୍ୟ ଅଟେ । ଯଦି ଏହା ଏହି ସାପଗୁଡ଼ିକୁ କେବଳ କାମୁଡ଼ି ଛାଡ଼ିଦିଏ ତେବେ ତାର ବିଷର ପ୍ରଭାବ ତାଙ୍କ ଉପରେ ପଡ଼େ ନାହିଁ । ଆପଣ ଏହା ଜାଣି ଆଶ୍ଚର୍ଯ୍ୟ ହେବେ ଯେ ଅନ୍ୟଦେଶର ବିଷାକ୍ତ ସାପ ଯଦି ଆମେରିକାର କିଂସ୍ନେକକୁ ଦଂଶନ କରେ ତେବେ ସେ ଅତି ଶୀଘ୍ର ମୃତ୍ୟୁର ଶିକାର ହୋଇଯାଏ । କିଂସ୍ନେକ କେବଳ ଆମେରିକାର ବିଷାକ୍ତ ସାପର ବିଷରୁ ମୁକ୍ତ ଅଟେ । ଏହି ସାପ 'କରେଇତ' (Krait) ସାପକୁ ବି ଖାଇଦିଏ । କୋରଲ ସାପ ତଥା ଆଫ୍ରିକାର ହଳଦିଆ ନାଗ ମଧ୍ୟ ସାପ ଖାଆନ୍ତି । ଏବେ ସମସ୍ୟା ହେଲା ଯେ ସାପ ନିଜ ଜାତି ସାପ ବିଷ ପ୍ରଭାବରେ ମରେନା; ଅନ୍ୟ ଜାତିର ସାପ ବିଷରେ ମରେ । ଭାରତୀୟ ସାପ ଉପରେ ସାର ଯୋଶେଫ୍ ଫାୟ୍ରର ବହୁତ ପରୀକ୍ଷା କରିଛନ୍ତି । ସେ କହିଛନ୍ତି ଯେ ଏକ ଦେଶର ବିଷାକ୍ତ ସାପ ନିଜର ଜାତି ସାପର ବିଷରୁ ବା ଅନ୍ୟ ଦେଶର ବିଷାକ୍ତ ସାପ ନିଜ ଜାତି ସାପ ବିଷରୁ କିମ୍ବା ଅନ୍ୟ ବିଷାକ୍ତ ଜାତିର ସାପ ବିଷରୁ ମୁକ୍ତ ରହେ । ବିଷହୀନ ସାପ ସବୁ ବିଷାକ୍ତ ସାପ ବିଷରେ ମରି ଯାଆନ୍ତି । କିନ୍ତୁ ଫିସ୍ ସାଇମନ ଏ କଥାରେ ଏକମତ ନୁହନ୍ତି । ତାଙ୍କ ମତରେ, ଯଦି ଆଫ୍ରିକାର ହଳଦିଆ ନାଗର ବିଷକୁ ତାର ନିଜ ଦେହରେ ପ୍ରବେଶ କରାଇ ଦିଆଯାଏ ତେବେ ସେ ମରିଯିବ ।

ବକଲେଣ୍ଡ ପଫ୍ଏଡରର ସାପ ବିଷପୂରେ ନିମ୍ନୋକ୍ତ ବର୍ଣ୍ଣନା ଦେଇ କହିଛନ୍ତି ଯେ, ମୋର ଚିଡ଼ିଆଖାନାରେ ଏକ ବଗିଚାରେ ଗୋଟିଏ ପକ୍ଷୀକୁ ଦୁଇଟି ପଫ୍ଏଡ଼ର ସାପ ମଝିରେ ରଖିଦିଆ ଯାଇଥିଲା । ପକ୍ଷୀଟିକୁ ଦେଖି ଦୁଇଟିଯାକ ସାପ ଦୌଡ଼ି ଆସି ପରସ୍ପରକୁ ଜାବୋଡ଼ି ଧରିଲେ । ଏହି ଅବସ୍ଥାରେ ଜଣେ ଅନ୍ୟ ଜଣଙ୍କର ମୁଣ୍ଡରେ ଚୋଟ ମାରିଲା । ଦୁଇ ମିନଟ ପରେ ଲୋକମାନେ ଦେଖିଲେ ଯେ ଆହତ ପଫ୍ଏଡ଼ର ମାଟିରେ ଚକ୍କର କାଟିବାକୁ ଲାଗିଲା ଏବଂ ପରେ ତଳକୁ ପଡିଗଲା । ଅନ୍ୟ ସାପଟି ଶୀଘ୍ର ନିଜର ରହିବା ସ୍ଥାନକୁ ଚାଲିଗଲା । ରକ୍ଷକମାନେ କହିଲେ ଯେ ମରିଥିବା ପଫ୍ଏଡର କିଛି ସମୟ ପରେ ବଞ୍ଚି ଉଠିଲା । କିନ୍ତୁ ତା'ପରେ ତାର ଦେହ ନିଷ୍କଳ ହେବାର ଲକ୍ଷଣ ଦେଖାଗଲା । ତାର ମୁଣ୍ଡ ଗୋଟିଏ ଦିଗକୁ ଢ଼ଳି ପଡ଼ିଲା ଓ ତାର ମୁଣ୍ଡକୁ ସେ ମୋଟେ ସିଧା କରି ପାରୁ ନଥିଲା । ଯଦି କେହି ତାକୁ ସ୍ପର୍ଶ କରୁଥିଲା ତେବେ ସେ ଅତି ଶୀଘ୍ର ରାଗି ଯାଉଥିଲା ।

ସଂସାରରେ ପିମ୍ପୁଡ଼ି ଏକ ଅଦ୍ଭୁତ ଜୀବ । ଯେତେବେଳେ ପିମ୍ପୁଡ଼ିମାନେ ବିରାଟ ଦଳ ବାନ୍ଧି କେଉଁଠାରେ ଯାଉଥାଆନ୍ତି ସେତେବେଳେ ଯଦି ରାସ୍ତାରେ କୌଣସି ଜୀବକୁ ଦେଖନ୍ତି ତେବେ ସବୁ ପିମ୍ପୁଡ଼ି ମିଶି ତାକୁ ଚଟି ଦିଅନ୍ତି କିମ୍ବା ମାରି ଖାଇ ଯାଆନ୍ତି ।

କେବେ କେବେ ପିମ୍ପୁଡ଼ିମାନେ ମାଇଲଏ ପର୍ଯ୍ୟନ୍ତ ଘେରି ରହିଥାନ୍ତି । ଶୁଖିଲା ଘାସ ଉପରେ ସେମାନେ ଯେତେବେଳେ ଦଳବଦ୍ଧ ଭାବରେ ଚାଲନ୍ତି ସେତେବେଳେ ମନେ ହୁଏ ଯେପରି କେହି ପଥରରେ କୌଣସି କଠିନ ବସ୍ତୁକୁ ଛାଟୁଛି । ଲୁଇ ପି. ବାବଲରଙ୍କ ବର୍ଣ୍ଣନାନୁଯାୟୀ ଗୋଟିଏ ପିମ୍ପୁଡ଼ି ଦଳ ଗୋଟିଏ ସାପକୁ ମାରିପକେଇ ଥିଲେ । ଏକଦା ଏକ ହର୍ଣ୍ଣ ଭାଇପର ଓ ପିମ୍ପୁଡ଼ିଙ୍କ ମଧ୍ୟରେ ଯୁଦ୍ଧ ହେବାର ଦେଖାଯାଇଥିଲା । ପିମ୍ପୁଡ଼ିମାନେ ସାପର ଦେହ ସାରା ଘେରି ଯାଇଥିଲେ ଏବଂ ସାପକୁ କାମୁଡ଼ି ଧରିଥିଲେ । ପନ୍ଦର ମିନିଟ ପର୍ଯ୍ୟନ୍ତ ସାପ ସେହି ପିମ୍ପୁଡ଼ିଙ୍କ ମେଳ ଭିତରେ ଚଳବୁଲ କରି ପାରୁଥିଲା କିନ୍ତୁ କ୍ରମେ ତାର ଗତି ଧୀର ହୋଇ ଆସିଲା । ଶେଷରେ ସେ ମରିଗଲା । ମରିବାର କେତେ ମିନିଟ ପରେ ଦେଖାଗଲା କେବଳ ସାପର କଙ୍କାଳ ମାତ୍ର ପଡ଼ି ରହିଛି ।

କେତେକ ଝିଟିପିଟି ସାପ ଖାଇବାକୁ ଅତ୍ୟନ୍ତ ଭଲ ପାଆନ୍ତି । ଅଷ୍ଟ୍ରେଲିଆର ଚେପ୍ଟା ଲାଞ୍ଜ ଥିବା ଝିଟିପିଟି ଓ କାଚ ସାପ ପରି ଝିଟିପିଟି ଉଭୟେ ସାପକୁ ଖାଆନ୍ତି ।

# ଝିଟିପିଟି

ପ୍ରାଚୀନ ସରୀସୃପଙ୍କ ଅନେକ ବଂଶଧର ଏପର୍ଯ୍ୟନ୍ତ ଜୀବିତ ଅଛନ୍ତି । ଏମାନଙ୍କୁ ସ୍ଥଳ, ଜଳ ତଥା ମାଟି ତଳେ ବାସ କରୁଥିବା ତିନି ପ୍ରଧାନ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ମାଟି ଉପରେ ରହୁଥିବା ସରୀସୃପଙ୍କ ମଧ୍ୟରେ ଝିଟିପିଟିର ସ୍ଥାନ ସର୍ବପ୍ରଥମ ଅଟେ । ବୈଜ୍ଞାନିକଗଣ ଗବେଷଣା କରି ଏପର୍ଯ୍ୟନ୍ତ ପ୍ରାୟ ୧୯୦୦ ପ୍ରକାରର ଏହି ଜାତିର ସରୀସୃପ ମିଳିଛନ୍ତି ବୋଲି ମତ ଦେଇଛନ୍ତି ।

ଝିଟିପିଟି ବିଭିନ୍ନ ଆକୃତିର ହୁଅନ୍ତି । କେତେକ ବହୁତ ସାନ ଓ ଆଉ କେତେକ ୭ ମିଟର ପର୍ଯ୍ୟନ୍ତ ଲମ୍ବା ହୋଇଥାଆନ୍ତି । ଅଧିକାଂଶ ଝିଟିପିଟିଙ୍କ ଦେହ ପତଳା କାତିରେ ଆବୃତ ଏବଂ ସେହି କାତି ସବୁ ଖୁରର ଧାର ପରି ମୁନିଆ ହୋଇଥାଏ । କେତେକଙ୍କ ଚମଡ଼ା ଚକ୍‌କଣ ଅଟେ ତ କେତେକଙ୍କ ଦେହରେ ମୋଟେ କାତି ନାହିଁ । ପ୍ରାୟ ସବୁ ଝିଟିପିଟିଙ୍କର ଚାରି ଗୋଡ଼ ଅଛି କିନ୍ତୁ ଆଉ କେତେକଙ୍କର ମାତ୍ର ଦୁଇଟା । ଏପରି କେତେକ ଝିଟିପିଟି ଅଛନ୍ତି ଯେଉଁମାନଙ୍କର ମୋଟେ ଗୋଡ ନାହିଁ । ଏମାନଙ୍କ ଗୋଡ଼ ପଞ୍ଝାରେ ବହୁତ ତୀକ୍ଷ୍ଣ ନଖ ଅଛି । କେତେକ ଝିଟିପିଟିର ଗଠନ ଏପରି ଯେ ସେମାନଙ୍କର ଆଙ୍ଗୁଳିର ଚାରିକୋଣ ଚମଡ଼ା ଦ୍ୱାରା ସଂଯୁକ୍ତ ହୋଇଥାଏ । ଏପରି ହେବା ଦ୍ୱାରା ସେ ବାଲୁକାମୟ ସ୍ଥାନରେ ଯିବା ଆସିବା କରି ପାରେ । ସାଧାରଣତଃ, ଏହିପରି ଝିଟିପିଟି ମରୁଭୂମି ମଧ୍ୟରେ ଦେଖିବାକୁ ମିଳେ ।

ଝିଟିପିଟିର ଜିଭ ଅନେକ ପ୍ରକାରର ଥାଏ । କେତେକ ମୋଟା ଓ ଚେପ୍ଟା କିନ୍ତୁ ଅଧିକାଂଶ ଝିଟିପିଟିର ଜିଭ ଲମ୍ବା, ପତଳା ଏବଂ ସାପ ଜିଭ ପରି ବିଭକ୍ତ ହୋଇଥାଏ । କେତେକ ଝିଟିପିଟିର ଜିଭର କୋଣରେ ଏକ ପ୍ରକାର ଅଠାଳିଆ ରସ ଥାଏ । ଏହା ସାହାଯ୍ୟରେ ସେ ଦ୍ରୁତଧାରେ ଶିକାରକୁ ଧରିପାରେ ।

ଝିଟିପିଟିର ଲାଞ୍ଜ ସାଧାରଣତଃ ଗ୍ଲେଟ ଓ ମୋଟା ହୋଇଥାଏ କିନ୍ତୁ ଆଉ କେତେକଙ୍କ ଲାଞ୍ଜ ଲମ୍ବା ଓ ପତଳା ଅଟେ । କେତେକ ଜାତିର ଝିଟିପିଟିଙ୍କ ଲାଞ୍ଜ ତାର ଦେହ ଓ ମୁଣ୍ଡ ତୁଳନାରେ ଦୁଇଗୁଣ କି ତିନି ଗୁଣ ବଡ ।

ବଡ଼ ବଡ଼ ଝିଟିପିଟି ତାର ଲାଞ୍ଜ ଝପଟାଇ ଖୁବ୍ ଜୋରରେ ଶତ୍ରୁକୁ ଆଘାତ କରେ । ଯେଉଁମାନଙ୍କ ଲାଞ୍ଜ କଣ୍ଟାଯୁକ୍ତ ହୋଇଥାଏ ସେମାନେ ଲାଞ୍ଜକୁ ଶତ୍ରୁର ଦେହରେ ଫୋଡ଼ାଇ ତାର କ୍ଷତ ସ୍ଥାନରୁ ମାଂସ କାଢ଼ିନିଅନ୍ତି ।

ପୁଣି ଏପରି କେତେକ ଝିଟିପିଟି ଅଛନ୍ତି ଯେଉଁମାନେ କି ଶତ୍ରୁ ଆକ୍ରମଣ ସମୟରେ ତାର ଲାଞ୍ଜକୁ ଦେହଠାରୁ ଅଲଗା କରିଦିଅନ୍ତି । ଏହି ଲାଞ୍ଜ ଶରୀରଠାରୁ ବିଚ୍ଛିନ୍ନ ହୋଇଯିବା ପରେ ମଧ୍ୟ ବହୁ ସମୟ ପର୍ଯ୍ୟନ୍ତ ହଲଚଲ ହେଉଥାଏ । ଏହିପରି ହଲୁଥିବା ଲାଞ୍ଜକୁ ଯେତେବେଳେ ତାର ଶତ୍ରୁ ଧରି ପକାଏ ସେତେବେଳେ ଝିଟିପିଟି ପଳାୟନ କରେ ଏବଂ ନିଜ ଜୀବନକୁ ବଞ୍ଚାଏ । କେତେକ ମାସ ପରେ ପୁଣି ତାର ନୂଆ ଲାଞ୍ଜ ବାହାରେ । କିନ୍ତୁ ଏହି ନୂଆ ଲାଞ୍ଜ ପ୍ରଥମ ଲାଞ୍ଜ ଅପେକ୍ଷା ଶ୍ରେଷ୍ଠ ହୋଇଥାଏ ଓ ତାର ଉପର ଚମଡ଼ା ଆବଡ଼ା ଖାବଡ଼ା ହୋଇଥାଏ ।

ଝିଟିପିଟି ଅତ୍ୟନ୍ତ ଚଞ୍ଚଳ ପ୍ରକୃତିର । କେତେକ ଝିଟିପିଟି ଏତେ ଶୀଘ୍ର ଦୌଡ଼ନ୍ତି ଯେ ସେମାନଙ୍କୁ ଦେଖି ବି ଯାଏନାହିଁ । ନିଜ ଦେହର ସମ୍ମୁଖ ଭାଗକୁ ଉଠାଇ ପଛ ଗୋଡ଼ ଉପରେ ଭରି ଦେଇ ଲାଞ୍ଜ ସାହାଯ୍ୟରେ ସେମାନେ ଖୁବ୍ ଶୀଘ୍ର ଦୌଡ଼ି ପାରନ୍ତି । ଆପଣ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ କେତେକ ଝିଟିପିଟି ଉଡ଼ି ବି ପାରନ୍ତି । ଏହି ଜାତିର ଝିଟିପିଟିର ଦେହର ଚମଡ଼ା ଦୁଇଆଡ଼କୁ ବାହାରି ଆସିଥାଏ । ଉଡ଼ିବା ସମୟରେ ସେ ଏହି ଚମଡ଼ା ଉଡ଼ାଜାହାଜର ଡେଣା ପରି ବିସ୍ତାରି ଦେଇପାରେ ।

ବଡ଼ ବଡ଼ ଝିଟିପିଟି କାମୁଡ଼ିଲେ କ୍ଷତ ହୋଇଯାଏ କିନ୍ତୁ ଏହି କ୍ଷତ ହେତୁ କେହି ମରନ୍ତି ନାହିଁ । ଅନେକ ଲୋକଙ୍କର ଧାରଣା ଯେ ଗୋଧି ଓ ଏଣ୍ଡୁଅ କାମୁଡ଼ିଲେ ଲୋକେ ମରି ଯାଆନ୍ତି କିନ୍ତୁ ଏପରି ଧାରଣା ଭୁଲ । ଏ ପର୍ଯ୍ୟନ୍ତ କେବଳ ମାତ୍ର ଦୁଇ ଜାତିର ଝିଟିପିଟିଙ୍କର ବିଷ ଅଛି ବୋଲି ଜଣାଯାଇଛି । ଏମାନଙ୍କ ମୁହଁ ଭିତରେ ବିଷ ଗ୍ରନ୍ଥି ଅଛି ଏବଂ ଶତ୍ରୁ ଦେହରେ ବିଷ ପ୍ରୟୋଗ କରିବା ପାଇଁ ବିଷ ଦାନ୍ତ ମଧ୍ୟ ଅଛି । ଏକ ପ୍ରକାର ବିଷାକ୍ତ ଜାତିର ଝିଟିପିଟି ଉତ୍ତର ଆମେରିକାର ମଧ୍ୟମେକ୍ସିକୋଠାରୁ ମଧ୍ୟଆମେରିକା ପର୍ଯ୍ୟନ୍ତ ଦେଖିବାକୁ ମିଳେ । ଆଉ ଏକ ଜାତି ନିଉ ମେକ୍ସିକୋ ଓ ଏରିଜୋନାରେ ଦେଖିବାକୁ ମିଳେ । ଏହାର ଦେହ ଗୋଲାପୀ ଓ କଳାରଙ୍ଗର ଦାଗ ଚର୍ଚ୍ଚିତ ହୋଇଥାଏ ।

ଏହି ଦୁଇ ଜାତି ମଧ୍ୟରୁ ପ୍ରଥମ ଜାତି ଝିଟିପିଟିର ଦେହ ସୁଗଠିତ, ଲାଞ୍ଜ ମୋଟା ଏବଂ ଶ୍ରେଷ୍ଠ । ଏହା ଦେହରେ ବହୁତ ଚର୍ବି ଥାଏ । ତେଣୁ ଯେତେବେଳେ ଖାଇବାକୁ ମିଳେ ନାହିଁ ସେତେବେଳେ ଏହି ଚର୍ବି ସାହାଯ୍ୟରେ ସେ କେତେ ସପ୍ତାହ ପର୍ଯ୍ୟନ୍ତ ନ ଖାଇ ଜୀବିତ ରହିପାରେ ।

ଏହି ଦୁଇ ଶ୍ରେଣୀର ଝିଟିପିଟିଙ୍କ ବିଷରେ ଶ୍ରେଷ୍ଠ ଜୀବଜନ୍ତୁ ଶୀଘ୍ର ମରି ଯାଆନ୍ତି । ଅନେକ ଲୋକ ମଧ୍ୟ ଏହାର କାମୁଡ଼ାରେ ମରି ଯାଆନ୍ତି । ବିଷାକ୍ତ ହେଲେ ମଧ୍ୟ ଲଣ୍ଡନର ଚିଡ଼ିଆଖାନାରେ ଏହାକୁ ପାଳନ କରାଯାଇ ରଖାଯାଇଛି । ଏହାର ରକ୍ଷକ ବିନା ଭୟରେ ତାକୁ ଉଠାଇ ନିଏ । ବୋଧହୁଏ ଲଣ୍ଡନରେ ମଧ୍ୟ ଆମେରିକା ପରି ଗରମ ଓ ଉତ୍ତାପ ନାହିଁ । ଏହି ଦୁଇ ବସ୍ତୁର ଅଭାବ ହେତୁ ହୁଏତ ଏହି ଜାତିର ଝିଟିପିଟିର ଶକ୍ତି କମ୍ ହୋଇଥାଏ । ଏହା ପ୍ରାୟ ୭୦ ସେଣ୍ଟିମିଟର ଲମ୍ବା ଓ ଏହା ଦେହର ଚମଡ଼ା ଦାନାଦାର ପରି ।

ଅନ୍ୟ ପ୍ରକାର ଝିଟିପିଟି ଅଣ୍ଡା ଦିଏ । ଏହି ଅଣ୍ଡା ବହୁତ ବଡ଼ । ଏହା କଠିନ ଆବରଣ ଯୁକ୍ତ ଓ ଧଳା ରଙ୍ଗର ଅଟେ । ଗୋଟିଏ ଚିଡ଼ିଆଖାନାରେ ଅଧ ମିଟର ଲମ୍ବା ଏକ ଝିଟିପିଟି 7 ସେଣ୍ଟିମିଟର ଲମ୍ବା ଓ 4 ସେଣ୍ଟିମିଟର ଚଉଡ଼ା ବିଶିଷ୍ଟ ଅଣ୍ଡା ଦେଇଥିବାର ଦେଖା ଯାଇଥିଲା ।

ଅଧିକାଂଶ ଝିଟିପିଟି ସ୍ଥଳ ଭାଗରେ ରହିଥାଆନ୍ତି । କିନ୍ତୁ କେତେକ ଗଛ ଉପରେ, ପାଣିରେ ଓ ଅଳ୍ପ କେତେକ ଜାତି ଜଳ ସ୍ଥଳ ଉଭୟ ସ୍ଥାନରେ ରହନ୍ତି । ସାଧାରଣତଃ ଏମାନେ କିଛି ଶବ୍ଦ କରନ୍ତି ନାହିଁ କିନ୍ତୁ ବିରକ୍ତ କଲେ ଏମାନେ ସାପ ପରି ଫଁ ଫଁ କରନ୍ତି । କେବେ କେବେ ଘରର କାନ୍ଥ ଉପରେ ବୁଲୁଥିବା ଝିଟିପିଟି କଟ୍ କଟ୍ ଶବ୍ଦ କରନ୍ତି ।

କେତେକ ଝିଟିପିଟିର ରଙ୍ଗ ବଦଳ କରିବାର ଅଦ୍ଭୁତ ଶକ୍ତି ଅଛି । ଏହି ପରିବର୍ତ୍ତନ ସେ କେବଳ ନିଜକୁ ରକ୍ଷା କରିବା ପାଇଁ କରେ । ପରିସ୍ଥିତି ଅନୁସାରେ ଏହି ପରିବର୍ତ୍ତନ ତାକୁ ଗୋପନ ରଖିବାରେ ସାହାଯ୍ୟ କରେ । ଏହି ଝିଟିପିଟିକୁ ବିରକ୍ତ କଲେ ସେ ବିଭିନ୍ନ ପ୍ରକାର ରଙ୍ଗ ବଦଳ କରିଥାଏ । ଏହି ରଙ୍ଗ ଦେଖିବାକୁ ବହୁତ ସୁନ୍ଦର ଅଟେ । ଏହି ଝିଟିପିଟି ଉଷ୍ଣ ତଥା ଶୀତୋଷ୍ଣ ପ୍ରଦେଶରେ ଦେଖାଯାଏ । ଇଂଲଣ୍ଡରେ କେବଳ ତିନି ପ୍ରକାର ଝିଟିପିଟି ଦେଖିବାକୁ ମିଳନ୍ତି ।

ଋତୁ ପରିବର୍ତ୍ତନ ସମୟରେ ପୁରୁଷ ଝିଟିପିଟି ଗାଢ଼ ସବୁଜ ରଙ୍ଗର ହୋଇଥାଏ । ଜୁନ୍ ମାସରେ ସ୍ତ୍ରୀ ଝିଟିପିଟି ଏକ ଡଜନ ପତଳା ଆବରଣଯୁକ୍ତ ଅଣ୍ଡା ଦିଏ । ସ୍ତ୍ରୀ ଝିଟିପିଟି ଅଣ୍ଡାକୁ ବାଲିରେ ଗାତକରି ପୋତି ରଖେ ଏବଂ ଗାତକୁ ପତ୍ର ଇତ୍ୟାଦି ଦେଇ ଢାଙ୍କି ରଖେ । ଜୁଲାଇ ଅଗଷ୍ଟ ମାସରେ ଏହି ଅଣ୍ଡା ଫୁଟି ଛୁଆ ବାହାରେ । ଏହି ଛୁଆର ଲମ୍ବ ପ୍ରାୟ ଏକ ସେଣ୍ଟିମିଟର ଅଟେ । କିନ୍ତୁ ବାଲିରେ ରହୁଥିବା ଏକ ପ୍ରକାର ସ୍ତ୍ରୀ-ଝିଟିପିଟି ମୂଷା ପରି ଛୁଆ ଦିଏ ।

କୁଇନ୍ସଲାଣ୍ଡ ଓ ଉତ୍ତର ଅଷ୍ଟ୍ରେଲିଆରେ ଝାଲର ଥିବା ଝିଟିପିଟି ଏକ ଆଶ୍ଚର୍ଯ୍ୟ ଜନକ ଜୀବ ଅଟେ । ଏହାର ଲମ୍ବ ପ୍ରାୟ ଏକ ମିଟର । ଏହାର ବେକର ଚାରିପାଖରେ ଝାଲେରି ଅଛି । ରାଗିଗଲେ ସେ ତାକୁ ସମ୍ପୂର୍ଣ୍ଣ ଭାବରେ ମେଲାଇ ଦିଏ । ସାଧାରଣତଃ ଏହି ଝାଲର ସ୍ତର ସ୍ତର ହୋଇ ତାର ଦେହର ଦୁଇ ଦିଗରେ ରହିଥାଏ । ହଳଦିଆ ରଙ୍ଗର ଏହି ଝାଲେରିରେ ନାଲି ରଙ୍ଗର ଦାଗ ପଡ଼ିଥାଏ । ଏହାକୁ ଶତ୍ରୁ ସମ୍ମୁଖରେ ହଠାତ୍ ଖୋଲି ସେ ଭୟଙ୍କର ରୂପ ଧାରଣ କରେ । ଏହି ଜାତିର ଝିଟିପିଟିର ରୂପ ଓ ଆକୃତି ଅତ୍ୟନ୍ତ ଭୟଙ୍କର ଓ ଏହା ଏକ ଅନିଷ୍ଟକାରୀ ଜୀବ । ଦୌଡ଼ିବା ସମୟରେ ଏହା ନିଜର ମୁଣ୍ଡ ଓ ଲାଞ୍ଜକୁ ଉପରକୁ ଉଠାଇ ନିଏ ।

ଦାନାଦାର ଲାଞ୍ଜ ଯୁକ୍ତ ଏକ ପ୍ରକାର ଝିଟିପିଟି ଅଛି ଯାହାକୁ ଆରବବାସୀମାନେ ହାର୍ଦ୍ଦିମ ବା କାର୍ଦ୍ଦୁମ ବୋଲି କହନ୍ତି । ଏହା ପ୍ରକୃତରେ ଦେଖିବାର ଯୋଗ୍ୟ ଅଟେ ।

ଶତ୍ରୁ ଅନୁସରଣ କରୁଥିବା ସମୟରେ ସେ ଖୁବ୍ ଶୀଘ୍ର ଦୌଡ଼େ ଏବଂ କିଛି ଦୂର ଯାଇ ପଛକୁ ଫେରି ରହେ । ଏହି ସମୟରେ ସେ ମୁଣ୍ଡକୁ ତଳ ଉପର କରୁଥାଏ ଏବଂ ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ ପୁଣି ଦୌଡ଼ିବାକୁ ଆରମ୍ଭ କରେ ।

ପଶ୍ଚିମ ତଥା ଦକ୍ଷିଣ ଅଷ୍ଟ୍ରେଲିଆରେ ଏକ ବିଚିତ୍ର ଧରଣର ଝିଟିପିଟି ଦେଖିବାକୁ ମିଳେ ଯାହାର ମୁଣ୍ଡ, ଦେହ, ହାତ, ଗୋଡ଼ ତଥା ଲାଞ୍ଜର ସବୁ ଅଂଶ କଣ୍ଟାରେ ପୂର୍ଣ୍ଣ । ମୁଣ୍ଡର ପଛ ଭାଗରେ ଏକ ସେଣ୍ଟିମିଟରର ଲମ୍ବା କଣ୍ଟା ସବୁ ଉଠିଥାଏ । ଏହି ଝିଟିପିଟି କେବଳ 12/13 ସେଣ୍ଟିମିଟରର ଲମ୍ବା ଅଟେ । ଦେଖିବାକୁ ଭୟଙ୍କର ହେଲେ ମଧ୍ୟ ଏହା କ୍ଷତିକାରୀ ନୁହେଁ । ଶତ୍ରୁର ଦେହରେ ଏହା କଦାପି ତାର କଣ୍ଟାକୁ ବିଦ୍ଧ କରେ ନାହିଁ ଯଦିଓ ପ୍ରକୃତି ଏହାକୁ ରକ୍ଷା କରିବା ପାଇଁ ଏହାର ଶରୀରକୁ କଣ୍ଟକମୟ କରିଛନ୍ତି । ଏହା ଛୋଟ ଛୋଟ ପିମ୍ପୁଡ଼ି ଖାଏ ଏବଂ ଏକାଥରକେ 1500 ପର୍ଯ୍ୟନ୍ତ ପିମ୍ପୁଡ଼ି ଖାଇପାଇ ପାରେ ।

ଶିଙ୍ଗ ଥିବା ଝିଟିପିଟି ଏକ ଅଦ୍ଭୁତ ଜୀବ । ଏହାର ଶରୀର ଚେପଟା ଓ ଚଉଡ଼ା ଅଟେ । କେବଳ 12/13 ସେଣ୍ଟିମିଟରର ଲମ୍ବା ହୋଇଥାଏ । ଆମେରିକା ମେକ୍‌ସିକୋରେ 15 ପ୍ରକାରର ବିଭିନ୍ନ ଜାତିର ଏହିପରି ଝିଟିପିଟି ଦେଖିବାକୁ ମିଳେ ଏହାର ଶରୀର ଓ ମୁଣ୍ଡ ମୁନିଆ କଣ୍ଟାରେ ସଜ୍ଜିତ ହୋଇଥାଏ । କିନ୍ତୁ ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ଯଦି କୌଣସି ଜୀବ ଏହାକୁ ଆକ୍ରମଣ କରେ ତେବେ ସେ ତାର ଆଖିର କୋଣରୁ କେତେ ଫୁଟ ଦୂର ପର୍ଯ୍ୟନ୍ତ ରକ୍ତର ଧାର ନିକ୍ଷେପ କରେ । ଯଦି କେହି ଏହାକୁ ଓଲଟାଇ ଦିଏ ତେବେ ସେ ଅତ୍ୟନ୍ତ ରାଗିଯାଇ ଖୁବ୍ ଶୀଘ୍ର ଶୀଘ୍ର ନିଜର ଆଖି କୋଣରୁ ରକ୍ତ ଫିଙ୍ଗିବାକୁ ଆରମ୍ଭ କରେ, ପୁଣି ଶାନ୍ତ ହୋଇଗଲେ ତଳେ ଚୂପ ଚାପ ପଡ଼ି ରହେ । ସେତେବେଳେ ତାକୁ ଦେଖିଲେ ମନେ ହେବ ଯେ ସେ ଯେମିତି ମରି ଯାଇଛି ।

ମଧ୍ୟ ଆମେରିକାର ଉଷ୍ଣ ପ୍ରଦେଶରେ ଏପରି ଏକ ଜାତିର ଝିଟିପିଟି ଦେଖାଯାଏ ଯାହାର ମୁଣ୍ଡ, ପିଠି ଓ ଲାଞ୍ଜର ଚମଡ଼ା କୋଣିଆ ହୋଇ ଉପରକୁ ଉଠିଥାଏ । ମୁଣ୍ଡ ଉପରକୁ ଉଠିଥିବା ଏହି ଚମଡ଼ା କେବଳ ପୁରୁଷ ଝିଟିପିଟିର ଦେଖାଯାଏ । ପ୍ରାଚୀନ କାଳର ଲେଖକମାନେ ଏହା ବିଷୟରେ ଅଦ୍ଭୁତ କଥା ଲେଖିଛନ୍ତି । ଜଣେକ ଲେଖକ କହିଛନ୍ତି— "ଏହି ପ୍ରଦେଶରେ ଏକ ସର୍ପ ଥିଲା ଯାହାର ଲମ୍ବ 12 ଅଙ୍ଗୁଳିରୁ ବେଶୀ ହେବ ନାହିଁ । ତା' ଉପରେ ଏକ ଧଳା ଚିହ୍ନ ଥିଲା । ତାର ନିଶ୍ୱାସକୁ ଅନ୍ୟ ସାପମାନେ ବହୁତ ଡ଼ରୁଥିଲେ । ଏହା ଅନ୍ୟ ସର୍ପ ପରି ମଣ୍ଡଳାକାର ହେଉ ନଥିଲା । ସେ ନିଜର ବିଷ ଦ୍ୱାରା ବାଡ଼, ବୁଦାକୁ ଜାଳି ଦେଇ ପାରୁଥିଲା । ଦେହର ସମ୍ମୁଖ ଅଂଶକୁ ଉଠାଇ ସେ ଯିବା ଆସିବା କରୁଥିଲା ଏବଂ ପଥରକୁ ବି ଖଣ୍ଡ ଖଣ୍ଡ କରି ଦେଉଥିଲା । ଲୋକମାନଙ୍କର ଧାରଣା ଥିଲା ଯେ ତାର ଆଠ ଫୁଟ ଉଚ୍ଚର ଦୁଇଟି ବଡ଼ ଡେଣା ଥିଲା ଏବଂ ମୁଣ୍ଡ ରାଜମୁକୁଟ ପରି ଦେଖାଯାଉଥିଲା ।"

ଅନ୍ୟ ଏକ ଲେଖକ ବର୍ଣ୍ଣନା କରିଛନ୍ତି ଯେ ତାର ବିଷ ପ୍ରାଣନାଶୀ ଥିଲା । ତାର ନିଶ୍ୱାସ ବାଜିଲେ ବଡ଼ ବଡ଼ ବିଷଧାରୀ ସାପ ବି ମରି ଯାଉଥିଲେ । ଏପରି ଅନ୍ୟ ଏକ କଳ୍ପିତ କାହାଣୀ ଅଛି ଯେ ଥରେ ଏକ ମନୁଷ୍ୟ ଘୋଡ଼ା ଉପରେ ବସି ଏକ ବର୍ଚ୍ଛା ନେଇ ତାକୁ ଭୁଷିବାକୁ ଯାଉଥିଲା । କିନ୍ତୁ ତାର ବିଷ ଦ୍ୱାରା ସେହି ଅଶ୍ୱାରୋହୀ ତଥା ଅଶ୍ୱ ଉଭୟ ଦେଖୁ ଦେଖୁ ମରି ଯାଇଥିଲେ ।

ଏସବୁ କଳ୍ପିତ କାହାଣୀ । ବାସ୍ତବରେ ପ୍ରାଚୀନ ଯୁଗର ଲୋକମାନେ ଏହି ସବୁ ଜୀବ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ । ତେଣୁ ସେମାନଙ୍କ କଥା ବା କାହାଣୀ ସମ୍ପୂର୍ଣ୍ଣ କପୋଳ କଳ୍ପିତ ଥିଲା ।

ଏହି ଝିଟିପିଟି ଗଛରେ ରହେ ଏବଂ ଖୁବ୍ ଶୀଘ୍ର ଡାଳରେ ଚାଲିପାରେ । ଏହା ପାଣି ଉପରେ ଝୁଙ୍କି ପଡିଥିବା ଡାଳରେ ଖୁବ୍ ଆନନ୍ଦରେ ଆରାମ କରେ ଏବଂ ବିନା ଦ୍ୱିଧାରେ ଅତି ଶୀଘ୍ର ପାଣିରେ ବୁଡ଼ିଯାଏ । ପାଣିରେ ପହଁରିବା ସମୟରେ କେବଳ ଏହାର ବେକ ତଥା ଲାଞ୍ଜ ଉପରକୁ ଉଠି ରହେ ।

**ଘରରେ ରହୁଥିବା ଝିଟିପିଟି**—ଘରର କାନ୍ଥ ଉପରେ ଝୁଲୁଥିବା ଝିଟିପିଟି ଏପର୍ଯ୍ୟନ୍ତ ପ୍ରାୟ ତିନିଶହ ପ୍ରକାର ଜାତିର ଦେଖାଗଲାଣି । ଏହା ମୁଖ୍ୟତଃ ଉଷ୍ଣ ପ୍ରଦେଶରେ ଦେଖିବାକୁ ମିଳେ । ଏହି ପ୍ରକାର ଅଧିକାଂଶ ଝିଟିପିଟି ବହୁତ ସାନ ଅଟେ । ଏହି ଜାତିର ସବୁଠାରୁ ବଡ଼ ଝିଟିପିଟି 40 ସେଣ୍ଟିମିଟର ଲମ୍ବା ହୋଇଥାଏ ଏବଂ ସବୁ ଠାରୁ ଛୋଟ ସାଧାରଣତଃ ୪ ରୁ 10 ସେଣ୍ଟିମିଟରରୁ ବେଶୀ ହୁଏ ନାହିଁ ।

ପ୍ରାୟ ସବୁ ଝିଟିପିଟିଙ୍କ ଆଖିରେ ଏକ ପତଳା ଚମଡ଼ାର ପରଦା ଥାଏ । କିନ୍ତୁ ଆଖିରେ ପତା ନ ଥାଏ । ଏହାର ଆଙ୍ଗୁଳି ଗୁଡ଼ିକ ଏପରି ହୋଇଥାଏ ଯେ ଏହା ସାହାଯ୍ୟରେ ସେ ଚିକ୍କଣ ବସ୍ତୁ ଉପରେ ପେଟେଇ ଯାଏ ଏବଂ ଛାତ ଉପରେ ଓଲଟା ହୋଇ ଚାଲିପାରେ । ଯଦିଓ ଏହା ଏକ ନିର୍ଦ୍ଦୋଷ ପ୍ରାଣୀ ଅଟେ ତଥାପି ଲୋକେ ଏହାର ବିଭିନ୍ନ ଶକ୍ତି ବିଷୟରେ ବର୍ଣ୍ଣନା କରିଛନ୍ତି ।

ଏପରି କୁହାଯାଏ ଯେ ଝିଟିପିଟି ନିଜର ପଞ୍ଝା ଦ୍ୱାରା ବିଷ ବାହାର କରେ ଏବଂ ଯଦି ସେ କୌଣସି ଲୋକର ଦେହ ଉପରଦେଇ ଚାଲିଯାଏ ତେବେ ତାର ପଞ୍ଝାରୁ ବାହାରିଥିବା ବିଷ ଦ୍ୱାରା ମଣିଷର ଦେହ ଉପରେ ଘା ହୋଇଯାଏ । ଉତ୍ତର ଆଫ୍ରିକା, ଆରବ ତଥା ସିରିଆରେ ଏକ ପ୍ରକାର ଝିଟିପିଟିକୁ କୁଷ୍ଠ ରୋଗଜନ୍ମକାରୀ ଝିଟିପିଟି ବୋଲି କହନ୍ତି । ଏହି ଜାତିର ଝିଟିପିଟି ସମ୍ବନ୍ଧରେ ବର୍ଣ୍ଣନା କରଯାଇଛି ଯେ ତାର ଦାନ୍ତ ଏତେ ତୀକ୍ଷ୍ଣ ଯେ ଲୁହା ଚଦରକୁ ମଧ୍ୟ ସେ କଣା କରି ଦେଇପାରେ ।

ପ୍ରାୟ ସବୁ ଝିଟିପିଟି ବନ ସାବ ଲୁଚ ରହନ୍ତ ଏବଂ ରାତରେ ଶିକାର ପାଇଁ ବାହାରକୁ ବାହାରନ୍ତ । ଆଉ କେତେକ ବନରେ ବୁଲାଚଲା କରନ୍ତ ଏବଂ ରାତରେ ଶୋଇ ରହନ୍ତି । ଅନେକ ଝିଟିପିଟି ଗଛ ଡାଳରେ ରହିଥାନ୍ତି । କେତେକ ଆମର ଘରମାନଙ୍କରେ ଆଉ କେତେକ ବାଲରେ ଗାତ ତିଆର କରି ମାଟି ତଳେ ରହିଥାନ୍ତି । ଗାଛରେ ରହୁଥିବା ଝିଟିପିଟିର ଶୋଷକ ନଳୀଦଣ୍ଡ ନଥାଏ ଏବଂ ଘରେ ରହୁଥିବା ଝିଟିପିଟି ଠାରୁ ସେ ଦୁର୍ବଳ ।

କେତେକ ଜାତର ଝିଟିପିଟିର ଆଙ୍ଗୁଳରେ ସଙ୍କୁଚିତ କରି ପାରୁଥିବା ନଖ ଥାଏ । ଏହି ଜାତର ଝିଟିପିଟି ତାର ଦେହକୁ ତାର ଛୋଟ ପାଦ ଉପରେ ଥାପି ସିଧା ରଖେ ଓ ଏହାର ଲଞ୍ଜ ଖୁବ୍ ସହଜରେ ଛିଣ୍ଡିଯାଏ ।

ଏହି ଜାତର ଝିଟିପିଟିର ସବୁଠାରୁ ବଡ଼ ପ୍ରଜାତି ବଙ୍ଗଳା ଦେଶ, ଦକ୍ଷିଣ ଚୀନ ଓ ମାଳୟର ପ୍ରାୟ ସବୁ ଦ୍ୱୀପରେ ବହୁ ସଂଖ୍ୟାରେ ଦେଖିବାକୁ ମିଳେ । ଏହି ଦେଶର ଅଧିବାସୀମାନେ ଏହି ଝିଟିପିଟିକୁ 'ତୋକାଏ' ନାମରେ ଡାକନ୍ତି । କାରଣ ଏହା ଚିତ୍କାର କରିବା ସମୟରେ 'ତୋକାଏ' ବୋଲି ଶବ୍ଦ କରେ ଏବଂ ବହୁତ ସମୟ ପର୍ଯ୍ୟନ୍ତ ଜୋରରେ ଚିତ୍କାର କରୁଥାଏ । ଏହି ଝିଟିପିଟି କେବଳ ଛୋଟ ଛୋଟ କୀଟପତଙ୍ଗ ଖାଏ ନାହିଁ ତା ନୁହେଁ ବାଦୁଡ଼, ମୂଷା, ଛୋଟ ଛୋଟ ପକ୍ଷୀ ତଥା ଛୋଟ ଛୋଟ ଝିଟିପିଟିକୁ ବି ଆନନ୍ଦର ସହିତ ଖାଏ ।

ଏକ ଛୋଟ ଜାତର ମୋଟା ଲଞ୍ଜଥିବା ଝିଟିପିଟି ପାଖରେ ଅପୂର୍ବ ବୈଚିତ୍ର୍ୟ ଦେଖିବାକୁ ମିଳେ । ଏହା ଦକ୍ଷିଣ ଇଉରୋପ, ଏସିଆ, ଅଷ୍ଟ୍ରେଲିଆ ତଥା ଦକ୍ଷିଣ ଆମେରିକାରେ ଦେଖିବାକୁ ମିଳେ । ଏହାର ଅଙ୍ଗୁଳରେ ଶୋଷକ ନଳୀଦଣ୍ଡ ନଥାଏ ଏବଂ ତାର ଛୋଟ ଲଞ୍ଜ ଅତ୍ୟନ୍ତ ମୋଟା ଅଟେ ! ତାହା ଭିତରେ ଏକ ପୁଷ୍ଟିକର ବସ୍ତୁ ଜମା ରହିଥାଏ । ଅଷ୍ଟ୍ରେଲିଆ ଜାତର ଝିଟିପିଟିର ରଙ୍ଗ ଗାଢ଼ ବାଦାମୀ ରଙ୍ଗର ଅଟେ । ତାର ଚାଲିବା ଭଙ୍ଗୀ ଅତ୍ୟନ୍ତ ବିଚିତ୍ର । ଏହା ଅନ୍ୟ ସରୀସୃପ ପରି ପେଟରେ ଭର ଦେଇ ଚାଲେ ନାହିଁ । ବରଂ ନିଜର ଗୋଡ଼ ସାହାଯ୍ୟରେ ନିଜ ଶରୀରକୁ ଉଠାଇ ଅର୍ଦ୍ଧ ଗୋଲାକାର ଆକୃତି କରି ଧୀରେ ଧୀରେ ଆଗକୁ ଯାଏ । ଏହି ପ୍ରକାର ଚାଲିବା ଭଙ୍ଗୀ ଏପର୍ଯ୍ୟନ୍ତ ଅନ୍ୟ କୌଣସି ଜୀବଙ୍କଠାରେ ଦେଖାଯାଏ ନାହିଁ ।

ଅଷ୍ଟ୍ରେଲିଆ ସବୁ ଅଦ୍ଭୁତ ଜୀବଜନ୍ତୁଙ୍କ ଆଳୟ ଅଟେ । ସେଠାରେ ଏକ ଅସାଧାରଣ ଛୋଟ ଲଞ୍ଜଥିବା ଝିଟିପିଟି ଦେଖିବାକୁ ମିଳେ । ତାର ଲଞ୍ଜ ବହୁତ ଛୋଟ ଓ ଚଉଡ଼ା ଯାହା ମୁଣ୍ଡ ଭଳି ଜଣାପଡ଼େ । ମୁଣ୍ଡ ଏବଂ ଲଞ୍ଜର ଏପରି ସମାନତା ହେଉ

ଏହାର ଅନୁସନ୍ଧାନକାରୀମାନେ ଏହାକୁ ଦୁଇ ମୁଣ୍ଡ ବାଲା ଝିଟିପିଟି କହନ୍ତି । ଦୂରରୁ ଦେଖିଲେ କହିହେବ ନାହିଁ ଯେ ତା'ର ମୁଣ୍ଡ କେଉଁ ଆଡ଼ରେ ଅଛି ।

ଏଇ ଜାତୀୟ ଝିଟିପିଟି ଚଞ୍ଚଳ ହୁଅନ୍ତି ନାହିଁ । କୌଣସି ଜୀବ ଆସିଲେ ସେ ବସାରୁ ହଟେ ନାହିଁ ଯେଉଁଥି ପାଇଁ ସେଠାକାର ଅଧିବାସୀମାନେ ତାକୁ ସହଜରେ ଧରିନେଇ ପାରନ୍ତି । ଏହା ନିଦ୍ରାଳୁ ଝିଟିପିଟି ନାମରେ ପ୍ରସିଦ୍ଧ । ଶୀତ କାଳରେ ତାର ମହାନିଦ୍ରା ସମୟରେ ସେ ତାର ଲାଞ୍ଜରେ ସଞ୍ଚିତ ରଖିଥିବା ପଦାର୍ଥକୁ ଧୀରେ ଧୀରେ ଖାଏ । ଏହି ଖାଦ୍ୟ ଚର୍ବି ରୂପରେ ତାର ଲାଞ୍ଜରେ ଜମା ରହିଥାଏ । ଅନ୍ୟ ଋତୁରେ ସେ ସାପ, ଝିଟିପିଟି, ଜିଆ ତଥା ଫଳ ଖାଇ ଜୀବନ ଧାରଣ କରେ । ସ୍ତ୍ରୀ ଝିଟିପିଟି ଲମ୍ବରେ ପୁରୁଷ ଝିଟିପିଟିର ଅଧା ହୁଅନ୍ତି । ଅନ୍ୟ କୌଣସି ଝିଟିପିଟି ଏହାପରି ବଡ଼ ଛୁଆ ଜନ୍ମ କରନ୍ତି ନାହିଁ ।

ଦକ୍ଷିଣ ଇଉରୋପ ତଥା ଉତ୍ତର ଆଫ୍ରିକାରେ ବାଦାମୀ ରଙ୍ଗର ଝିଟିପିଟିକୁ ଦୂରରୁ ଦେଖିଲେ ତାଙ୍କ ପାଦକୁ ମୋଟେ ଜାଣି ହୁଏନାହିଁ । ବହୁତ ଚନ୍ନ ଚନ୍ନ କରି ଦେଖିବା ପରେ ଅତ୍ୟନ୍ତ ଛୋଟ ଛୋଟ ଗୋଡ଼ ଦେଖାଯାଏ । ପ୍ରତି ପାଦରେ କେବଳ ତିନୋଟି ଆଙ୍ଗୁଳି ଥାଏ ଯାହାଦ୍ୱାରା ସେ ବୁଲାଚଲା କରି ପାରେନା । ଏହା ସାପ ପରି ଛାତିରେ ଭରା ଦେଇ ଚାଲେ । ତେଣୁ ଅନେକ ମଣିଷ ତାକୁ ସାପ ବୋଲି ମନେ କରନ୍ତି ।

ଏହି ଝିଟିପିଟି ପ୍ରାୟ ତିରିଶି ସେଣ୍ଟିମିଟର ଲମ୍ବା କିନ୍ତୁ ତାର ଲାଞ୍ଜ ତାର ସମ୍ପୂର୍ଣ୍ଣ ଶରୀରର ଅଧା । ସେ ଓଦା ମାଟିରେ ରହିବାକୁ ପସନ୍ଦ କରେ ଏବଂ ଜିଆ ତଥା ଛୋଟ କୀଟ ପତଙ୍ଗ ଓ ଛୋଟ ଜନ୍ତୁଙ୍କୁ ଖାଏ । ଯଦିଓ ଏହା ହାନିକର ଜୀବ ନୁହେଁ ତଥାପି ଲୋକେ ଏହାକୁ ବିଷାକ୍ତ ବୋଲି ମନେ କରନ୍ତି । ଲୋକେ ଏପରି ମଧ୍ୟ କହନ୍ତି ଯେ ଏହା କାମୁଡ଼ିଲେ ଗାଈ ସୁଦ୍ଧା ମରିଯିବ, କିନ୍ତୁ ଆଜି ପର୍ଯ୍ୟନ୍ତ ଏମାନଙ୍କ ମୁଖରେ ବିଷଗ୍ରନ୍ଥି ମିଳିନାହିଁ ।

**ବୃହତ୍କାୟ ଝିଟିପିଟି**—ସଂସାରରେ ସବୁ ଝିଟିପିଟି ଛୋଟ ନୁହଁନ୍ତି । କେତେକ ଏପରି ବିଶାଳ ଅଛନ୍ତି ଯେ ତାକୁ ନ ଦେଖିଲେ ଅନୁମାନ କରିବା ସହଜ ନୁହେଁ । ବହୁତ ବଡ଼ ଝିଟିପିଟି ଆଫ୍ରିକା, ଭାରତ, ମାଳୟଦ୍ୱୀପ ତଥା ଅଷ୍ଟ୍ରେଲିଆରେ ଦେଖିବାକୁ ମିଳେ । ଏମାନଙ୍କୁ ଏଣ୍ଡୁଅ, ବିଷଖବ୍ର ଏବଂ ଗୋହ (ଗୋଧି ବା iguana) ବୋଲି କହନ୍ତି । ମାଳୟର ଗୋଧି ସବୁଠାରୁ ବଡ଼ ହୋଇଥାଏ । ଏହା ପ୍ରାୟ ଦୁଇ ମିଟର ପର୍ଯ୍ୟନ୍ତ ଲମ୍ବା ହୁଏ ।

**ଏଣ୍ଡୁଅ**—ଏଣ୍ଡୁଅ ବହୁତ ସାଧାରଣ ଜୀବ ଅଟେ । ଏହାର ଆକୃତି ପ୍ରାୟ ସବୁ ଲୋକ ଜାଣନ୍ତି । ଏହାର ବିଶେଷତ୍ୱ ଏହି ଯେ ଏହାର ମୁଣ୍ଡରେ ଗୋଟିଏ ଚୂଳ ଥାଏ । ଏହାର ରଙ୍ଗ ବଦଳିବା ଶକ୍ତି ମଧ୍ୟ ଅଛି । କିନ୍ତୁ ଏହା ବିଚଳିତ ହେଲେ ରଙ୍ଗ ବଦଳି କରିଥାଏ । ଏଣ୍ଡୁଅ ଦ୍ୱିପହର ଅପେକ୍ଷା ସନ୍ଧ୍ୟା କାଳରେ ଅଧିକ ଗାଢ଼ ରଙ୍ଗ ଧାରଣ କରେ ।

ପୁରୁଷ ଏଣ୍ଡୁଅ ଏକ ଯୋଦ୍ଧା ଜୀବ ଅଟେ । ଲଢ଼ିବା ସମୟରେ ସେ ନିଜର ରଙ୍ଗ ବଦଳାଇ ଥାଏ । ଯେତେବେଳେ ସ୍ତ୍ରୀ ଏଣ୍ଡୁଅ ତା' ପାଖରେ ପତ୍ର ଗହଳରେ ଲୁଚି ବସିଥାଏ ସେତେବେଳେ ସେ ତାକୁ ବହୁତ ପ୍ରେମ କରେ ଏବଂ ପାଖକୁ ଯାଇ ବହୁତ ପ୍ରକାର ଖେଳ ଦେଖାଏ । ପୁରୁଷ ଏଣ୍ଡୁଅ କଦଳୀ ଗଛର ପତ୍ର ଉପରେ କିମ୍ବା କୌଣସି କୁଦ ଉପରକୁ ଯାଇ କ୍ରୀଡ଼ା କରେ ଏବଂ ପୁଣି ଧୀରେ ଧୀରେ ସ୍ତ୍ରୀ ଏଣ୍ଡୁଅ ପାଖକୁ ଫେରିଆସେ । ଏହି ସମୟରେ ତାର ରଙ୍ଗ ହାଲୁକା ନାଲି ଓ ହଳଦିଆ ହୋଇଥାଏ । ଏହି ସମୟରେ ସେ ତାର ଶରୀରର ଅଗ୍ରଭାଗକୁ ଉପରକୁ ଉଠାଇ ନିଜର ମୁଣ୍ଡକୁ ଥରେ ଉପରକୁ ଓ ଥରେ ତଳକୁ ଏହିପରି ବାରମ୍ବାର ଉଠାପକା କରୁଥାଏ । ଏପରି ଅଭିନୟରେ ତାର ମୁହଁ ଥରେ ବନ୍ଦ ହୁଏ ପୁଣି ଖୋଲେ କିନ୍ତୁ ଏହା କୌଣସି ପ୍ରକାର ଶବ୍ଦ କରେ ନାହିଁ । ଯଦି କୌଣସି ମନୁଷ୍ୟ କିମ୍ବା ଅନ୍ୟ ଜୀବ ଏହି ପୁରୁଷ ଏଣ୍ଡୁଅକୁ ଧରି ନେଇଯାଏ ତେବେ ଅନ୍ୟ ପୁରୁଷ ଏଣ୍ଡୁଅ କେତେ ଘଣ୍ଟା ପରେ ପ୍ରଥମ ପୁରୁଷ ଏଣ୍ଡୁଅ ପରି ସେହି ସ୍ଥାନକୁ ଆସି ସେମିତି ଅଭିନୟ କରେ ।

ଏଣ୍ଡୁଅ 35 ସେଣ୍ଟିମିଟର ଲମ୍ବା ହୁଏ ଏବଂ ଏହାର ଲାଞ୍ଜ ତାର ଶରୀର ଠାରୁ ପ୍ରାୟ ଦୁଇ ଗୁଣ ବଡ଼ । ଏହାର ସଂପୂର୍ଣ୍ଣ ଦେହ ତଥା ଲାଞ୍ଜ ଲୋମରେ ଆବୃତ । ଯେଉଁ ସମୟରେ ସେ ରାଗିଯାଏ କିମ୍ବା ଖାଉଥାଏ ସେହି ସମୟରେ ତାର ମୁଣ୍ଡ ଏବଂ କଣ୍ଠ ଗଭୀର ନାଲି ରଙ୍ଗ ହୋଇଯାଏ ଓ ତାର ବାଦାମୀ ରଙ୍ଗର ଦେହ ଫିକା ହଳଦିଆ ହୋଇଯାଏ ।

ଏଣ୍ଡୁଅଙ୍କ ରଙ୍ଗ ବଦଳିବା ବିଷୟରେ ଏକ ଲେଖାରେ ବର୍ଣ୍ଣନା ଅଛି ଯେ ଗୋଟିଏ ଏଣ୍ଡୁଅ ଗୋଟିଏ ଗଛ ଡାଳରୁ ଯେତେବେଳେ ତଳକୁ ଓହ୍ଲାଉଥିଲା ସେହି ସମୟରେ ତାହାର ରଙ୍ଗ ଫିକା ନୀଳପରି ଥିଲା । ସେ ଅତି ଶୀଘ୍ର ଗଛ ତଳେ ଧପ୍‌କରି ରହିଗଲା । ଏଠି ମିନିଟିଏ ଦୁଇମିନିଟ ପରେ ଗୋଟିଏ ପୋକକୁ ଖୁବ୍ ଜୋରରେ କାମୁଡ଼ି ଧରିଲା । କାମୁଡ଼ିବା ସଙ୍ଗେ ସଙ୍ଗେ ତାର ନୀଳ ରଙ୍ଗ ଶୀଘ୍ର ଉଡ଼ିଗଲା ଏବଂ ତାର ଦେହ ପୃଥିବୀର ରଙ୍ଗ ପରି ବାଦାମୀ ହୋଇଗଲା ଏବଂ ସେ ଘାସ ଉପରେ ଦୌଡ଼ିବାକୁ ଲାଗିଲା । କିଛି ସମୟ ପରେ ସେ ପୁଣି ଅନ୍ୟ ଗଛ ଉପରକୁ ଚଢ଼ିଗଲା ଓ ପୁଣି ତାର ରଙ୍ଗ ହାଲକା ନୀଳ ରଙ୍ଗର ହୋଇଗଲା ।

**ବିଷଖବ୍ରା**—ବିଷଖବ୍ରାକୁ (ଏକ ପ୍ରକାର ସରୀସୃପ) ଆରବ ବାସୀମାନେ 'ୱରନ୍' କହନ୍ତି । ଏହା ସ୍ଥଳ ଭାଗରେ ରହେ । କିନ୍ତୁ ଏହି ଜାତିର କେତେକ ଜୀବ ଅଛନ୍ତି ଯେଉଁମାନେ କି ଜଳ ଓ ସ୍ଥଳ ଉଭୟ ଭାଗରେ ରହନ୍ତି । ବାଲୁକାମୟ ସ୍ଥାନରେ ତଥା ଘନ ଜଙ୍ଗଲରେ ବି କେତେକ ବିଷଖବ୍ରା ଦେଖିବାକୁ ମିଳେ । ଏମାନେ ସର୍ବଭକ୍ଷୀ ଅଟନ୍ତି ଅର୍ଥାତ୍ ଯେଉଁ ଜୀବକୁ ଏମାନେ ମାରି ପାରନ୍ତି ସେମାନଙ୍କୁ ଖାଇ ଯାଆନ୍ତି । ଏହା ଦୁଇ ମିଟର ଲମ୍ବା ହୁଏ । ଲୋକମାନଙ୍କର ଦୃଢ଼ ବିଶ୍ୱାସ ଯେ ଏହା ଅତ୍ୟନ୍ତ ବିଷାକ୍ତ ଏବଂ ମଣିଷକୁ କାମୁଡ଼ିଲେ ସେ ଶୀଘ୍ର ମରିଯାଏ । କିନ୍ତୁ ବୈଜ୍ଞାନିକମାନେ ଏହା ଦେହରେ କୌଣସି ଅଂଶରେ ବିଷର ଲକ୍ଷଣ

ମୋଟେ ପାଇନାହାନ୍ତି । ପରୀକ୍ଷା କରି ଦେଖାଯାଇଛି ଯେ ଏହା କୌଣସି ଜୀବକୁ କାମୁଡ଼ିଲେ ସେହି ଜୀବ ମରେ ନାହିଁ । ତେଣୁ କୁହାଯାଇପାରେ ଯେ ବିଷଖବ୍ଗିର ଦେହ ଏବଂ ମୁଖରେ କୌଣସି ପ୍ରକାର ବିଷ ନାହିଁ ।

**ଗୋଧି**:—ଗୋଧି ସମ୍ବନ୍ଧରେ ବହୁତ କଳ୍ପିତ ତଥା ଭ୍ରମାତ୍ମକ କାହାଣୀ ଶୁଣାଯାଏ । ପ୍ରାୟ ସାଢ଼େ ତିନି ମିଟର ପର୍ଯ୍ୟନ୍ତ ଲମ୍ବର ଗୋଧି ଦେଖିବାକୁ ମିଳେ । ତେବେ ସାଧାରଣତଃ ଏହା 2ରୁ 4.5 ମିଟର ପର୍ଯ୍ୟନ୍ତ ହୁଏ । ଏହା ଦେହରେ କଣ୍ଟା ନାହିଁ । କିନ୍ତୁ ତାର ଚମଡ଼ା ଦାନାଦାର । ଗୋଧି ଆଫ୍ରିକା, ଭାରତବର୍ଷ, ଦକ୍ଷିଣ ଚୀନ, ମାଳୟ, ଫିଲିପାଇନ ଦ୍ୱୀପ ସମୂହରେ ଏବଂ ଅଷ୍ଟ୍ରେଲିଆରେ ଦେଖିବାକୁ ମିଳେ । ଏମାନେ ଘରେ ପାଣିରେ ତଥା ଗଛ ଡାଳରେ ରହିଥାଆନ୍ତି । ପାଣିରେ ପହଁରିବା ସମୟରେ ଏମାନଙ୍କ ପାଦ ଦେହ ସହିତ ଲାଗିରହେ ଏବଂ ଲାଞ୍ଜ ଆହୁଲା ପରି କାମ କରେ । ଏହାର ଖାଦ୍ୟ ବହୁତ ପ୍ରକାରର ଅଛି । ଶ୍ୟାମ ଦେଶରେ ଏମାନେ ମୃତ ଦେହରୁ ମାଂସ ଖାଆନ୍ତି ଏବଂ କେବେ କେବେ ମରିଯାଇଥିବା ସାଙ୍ଗସାଥିମାନଙ୍କର ମାଂସକୁ ବି ଖାଆନ୍ତି । କେତେକ ପ୍ରକାରର ଗୋଧି ଗୁଣ୍ଡୁଚିମୂଷାକୁ ଶିକାର କରେ ଏବଂ ଆଉ କେତେକ ଛୋଟ ଛୋଟ କଇଁଛକୁ ଗିଳି ପକାଏ । ପେଟ ଭିତରେ କଇଁଛ ଖଣ୍ଡ ଖଣ୍ଡ ହୋଇଯାଏ । କେତେକ ଗୋଧିଙ୍କ ପେଟ ଭିତରେ ଜୀବଜନ୍ତୁଙ୍କ ମଳରୁ ଜାତ ଏକ ପ୍ରକାର ପୋକ ମିଳେ । ଗୋଧି ଏହି ପ୍ରକାର ପୋକ ଖାଇବାପାଇଁ ହାତୀ ଓ ମଇଁଷିର ମଳ ପଡ଼ିଥିବା ସ୍ଥାନରେ ବୁଲାଚଲା କରେ ।

ବର୍ମାର ଅଧିବାସୀମାନେ କୁକୁର ସାହାଯ୍ୟରେ ଏହି ଗୋଧିର ଅଣ୍ଡା ଖୋଜନ୍ତି ଏବଂ ଅଣ୍ଡାକୁ ନେଇ ଖାଇ ଦିଅନ୍ତି । କାରେନ ଜାତିର ଜଙ୍ଗଲୀ ଲୋକମାନେ ଏହାକୁ ଧରିବାପାଇଁ ଅନେକ ପ୍ରକାରର ଜାଲ ବୁଣନ୍ତି ଏବଂ ବାଉଁଶ ଦେଇ ଫାଶ ତିଆରି କରନ୍ତି । ଏହି ଲୋକମାନେ ଏହାକୁ କାଟି ଦିଅନ୍ତି ଏବଂ ତାର ଦେହକୁ ନିଆଁରେ ସେକି ବହୁତ ଆନନ୍ଦର ସହିତ ଖାଆନ୍ତି । ଏହି ଲୋକମାନେ କହନ୍ତି ଯେ ଗୋଧି ମୁଣ୍ଡରେ ବିଷ ଅଛି ।

ସିଂହଳୀ 'କବରା' ଗୋଧି ଦଳବଦ୍ଧ ଭାବରେ ରହିବାକୁ ପସନ୍ଦ କରେ । ଯଦି ସ୍ଥଳ ଭାଗରେ କେହି ତା' ନିକଟକୁ ଆସି ପହଞ୍ଚେ ତେବେ ସେ ଶୀଘ୍ର ପାଣି ଭିତରକୁ ଚାଲିଯାଏ । ଏହାର ସମଗ୍ର ଦେହ ହଳଦିଆ ଚମଡ଼ାରେ ଆବୃତ ହୋଇଥାଏ । ସେଥିପାଇଁ ସିଂହଳୀମାନେ ଏହାକୁ କବରା ଅର୍ଥାତ୍ ଚିହ୍ନଯୁକ୍ତ ଗୋଧି ବୋଲି କହନ୍ତି ।

ଏମାନଙ୍କର ଦୃଢ଼ ବିଶ୍ୱାସ ଯେ ଏହାର ଉପରର ଚର୍ବି ଚର୍ମରୋଗ ପାଇଁ ଅବ୍ୟର୍ଥ ଔଷଧ ଅଟେ । କିନ୍ତୁ ତା' ଭିତରର ଚର୍ବି ଅତ୍ୟନ୍ତ ବିଷାକ୍ତ । ସିଂହଳୀମାନେ ଚତୁରତାର ସହ ଏହାର ବିଷ କାଢ଼ନ୍ତି । ସେହି ବିଷକୁ ସେମାନେ ଗ୍ରାମବାସୀଙ୍କୁ ବିକ୍ରୀ

କରି ଦଅନ୍ତି । ଏହି ବିଷ କାଢ଼ିବା ପାଇଁ ସେମାନେ ଅତ୍ୟନ୍ତ ନିଷ୍ଠୁର ଭାବରେ ଗୋଧିକୁ ମାରିଥାନ୍ତି । ଏଠିକାର ଅଧିବାସୀମାନେ ଗୋଧିଠାରୁ ଏକ ପ୍ରକାର ତେଲ ବାହାର କରନ୍ତି ଏବଂ ଏହାକୁ 'କବରା' ତେଲ ବୋଲି କହନ୍ତି ।

ଏହି ବିଚିତ୍ର ତେଲ ତିଆରି କରିବା ପାଇଁ ସେମାନେ କବରା ଗୋଧିକୁ ବହୁତ କଷ୍ଟ ଦେଇଥାନ୍ତି । ଖୋଲା ସ୍ଥାନରେ ବଡ ବଡ଼ ଚୂଲାରେ ବଡ଼ ବଡ଼ କରେଇ ସବୁ ବସିଥାଏ । ଅନେକ ପ୍ରକାର ବିଷାକ୍ତ ସାପର ମୁଣ୍ଡରେ ଛିଦ୍ରକରି ସେ ସବୁକୁ କରେଇ ଉପରେ ବାନ୍ଧି ଝୁଲେଇ ଦିଆଯାଏ । ସାପ ମୁଣ୍ଡ ଭିତରର ବିନ୍ଦୁ ତାର ବିଷ ସହିତ ଏହି କରେଇରେ ପଡି ଜମା ହୋଇଯାଏ । ତା' ପରେ ଏହି ବିଷ ସହିତ ଅନ୍ୟ ଔଷଧ ମିଶାଇ ଦିଆଯାଏ ଏବଂ ଏହାକୁ ଗୋଟିଏ ମଣିଷର ଖପୁରି ମଧ୍ୟରେ ରଖି ଗରମ କରାଯାଏ । ଏହି ଖପୁରି ନିକଟରେ ତିନୋଟି କବରାଗୋଧି ବାନ୍ଧି ରଖାଯାଇଥାଏ । ଏହି ତିନୋଟି ଗୋଧି ଚୂଲାର ତିନୋଟି କୋଣରେ ରହି ଥାଆନ୍ତି । ତିନି ଗୋଧିକୁ ଯେତେବେଳେ ଖୁବ୍ ଜୋରରେ ସିଂହଳୀମାନେ ମାରନ୍ତି ସେତେବେଳେ ସେ ମୁହଁରେ ଏକ ପ୍ରକାର ଫିଁ ଫିଁ ଶବ୍ଦ କରେ । ଏହି ଫୁଫୁକାର ଶବ୍ଦ ହେତୁ ନିଆଁ ଖୁବ୍ ଶୀଘ୍ର ଜଳି ଉଠେ ଏବଂ ତାଙ୍କ ମୁହଁରୁ ସେତେବେଳେ ଯେଉଁ ଫେଣ ବାହାରେ ଲୋକମାନେ ତାକୁ ଫୁଟୁଥିବା ସେହି ମିଶ୍ରଣ ସହିତ ମିଶାଇ ଦଅନ୍ତି । କିଛି ସମୟ ପରେ ସେହି ମିଶ୍ରଣ ଉପରେ ତେଲ ପରି ଏକ ପଦାର୍ଥ ଜମା ହୋଇଯାଏ ଏବଂ 'କବରା' ତେଲ ପ୍ରସ୍ତୁତ ହୁଏ । ଏହାକୁ ତିଆରି କରିବା ସମୟରେ ସେମାନେ ଅସୁର ଉଦ୍ଦେଶ୍ୟରେ ଏକ କୁକୁଡ଼ା ବଳି ଦଅନ୍ତି ।

ଯଦି କୌଣସି ଗୋଧି କୌଣସି ଘର ଭିତରକୁ ପଶିଯାଏ କିମ୍ବା ଛାତ ଉପରକୁ ଚଢ଼ିଯାଏ, ତେବେ ଲୋକମାନେ ଏହାକୁ ବଡ଼ ଅଶୁଭ ବୋଲି ମନେ କରନ୍ତି । ସେମାନଙ୍କର ଧାରଣା ଯେ ଏପରି ହେଲେ ନିଶ୍ଚେ ସେହି ଘରେ କାହାକୁ ରୋଗ ହେବ କିମ୍ବା କାହାର ମୃତ୍ୟୁ ହେବ । ପ୍ରାଚୀନ କାଳରେ ଆମ ଦେଶର ଦସ୍ୟୁ ଓ ତସ୍କରମାନେ ଉଚ୍ଚ କାନ୍ଥ ଉପରେ ଚଢ଼ିବା ପାଇଁ ଗୋଧିକୁ ବ୍ୟବହାର କରୁଥିଲେ । ଏପରି କରିବା ପାଇଁ ସେମାନେ ପ୍ରଥମେ ଏକ ବଳିଷ୍ଠ ଓ ମଜଭୁତ ଗୋଧିକୁ ଧରି ତା' ପେଟର କିଛି ଉପରକୁ ଗୋଟିଏ ଦଉଡ଼ି ବାନ୍ଧି ଦେଉଥିଲେ । ସେହି ବନ୍ଧା ହୋଇଥିବା ଗୋଧିକୁ କାନ୍ଥ ଉପରେ ଚଢ଼ିବା ପାଇଁ ଛାଡ଼ି ଦେଉଥିଲେ । ଏହି ଗୋଧି ଉପରକୁ ଚଢ଼ି ଆଉ ପଟେ ମାଟିରେ ଲେପଟେଇ ରହୁଥିଲା ଏବଂ ଖୁବ୍ ଜୋରରେ ତାର ନଖକୁ ମାଟିରେ ପୋତି ଦେଉଥିଲା । ତସ୍କର ଓ ଦସ୍ୟୁମାନେ ସେହି ଦଉଡି ସାହାଯ୍ୟରେ ଉପରକୁ ଚଢି ସୁବିଧାରେ ଆରପଟକୁ ଚାଲି ଯାଉଥିଲେ ।

ପୋଷା ଗୋଧିକୁ ଯଦି କୌଣସି ଏକ ବଡ ଅଣ୍ଡା ମିଳିଯାଏ, ତେବେ ସେ ତାକୁ ଭଲ ଭାବରେ ଦେଖେ ଓ ବେକ ଉଠାଇ ଜିଭ ବାହାର କରି ତାକୁ ପରୀକ୍ଷା କରେ । ତା' ପରେ ତାକୁ ସେ ପୁରା ଗିଳିଦିଏ ଏବଂ ଗଳା ନଳୀରେ ନେଇ ତାକୁ ଭାଙ୍ଗିଦିଏ । ଯଦି ତାକୁ ପଚା ଅଣ୍ଡା ଦିଆଯାଏ ତେବେ ସେ ତାକୁ ଶୀଘ୍ର ବାହାର କରିଦିଏ ଏବଂ ବହୁତ ସମୟ ପର୍ଯ୍ୟନ୍ତ ଅନ୍ୟମନସ୍କ ହୋଇ ଚୁପ୍‌ଚାପ ବସି ରହେ ।

ଅଷ୍ଟ୍ରେଲିଆ ତଥା ନିଉଗିନିର ଗୋଧି ଏକ ମିଟର ଠାରୁ ଅଳ୍ପ ଅଧିକ ଲମ୍ବା ହୁଏ । ତାର ରଙ୍ଗ ବାଦାମୀ । ପିଠି ଏବଂ ଗୋଡ ହଳଦିଆ ରଙ୍ଗର ଓ ଚିହ୍ନଯୁକ୍ତ ହୋଇଥାଏ । ପେଟର ରଙ୍ଗ ହଳଦିଆ ହୋଇଥାଏ । ଗୋଧି ବିଷୟରେ ଅଧିକାଂଶ ଲୋକଙ୍କ ବିଶ୍ୱାସ ଭୁଲ । ଜୀବବିଜ୍ଞାନୀମାନେ ଗୋଧିର ପ୍ରତ୍ୟେକ ଅଂଶକୁ ବହୁତ ଭିନ୍ନ ଭିନ୍ନ କରି ପରୀକ୍ଷା କରିଛନ୍ତି କିନ୍ତୁ ତା ଦେହର କୌଣସି ଅଂଶରେ ବିଷର ଚିହ୍ନ ପାଇନାହାନ୍ତି । ବୈଜ୍ଞାନିକମାନଙ୍କ ମତ ହେଲା ଯେ ଏହି ଗୋଧି କୌଣସି ପ୍ରକାର କ୍ଷତିକାରକ ନୁହେଁ ।

**ଗିରେଇ ନେଉଳ**:—ସଂସାରରେ ଗିରେଇ ନେଉଳ ରଙ୍ଗ ପରିବର୍ତ୍ତନ କରୁଥିବା ସରୀସୃପ ଭାବରେ ପ୍ରସିଦ୍ଧ । ମନୁଷ୍ୟ ତାର ଏହି ରଙ୍ଗ ପରିବର୍ତ୍ତନ କରୁଥିବା ଶକ୍ତିର ଅତିରିକ୍ତ ବର୍ଣ୍ଣନା କରନ୍ତି । ଆପଣ ଜାଣି ଆଶ୍ଚର୍ଯ୍ୟ ହେବେ ଯେ କେତେକ ସରୀସୃପଙ୍କର ରଙ୍ଗ ପରିବର୍ତ୍ତନ କରୁଥିବା ଶକ୍ତି ଏମାନଙ୍କଠାରୁ ମଧ୍ୟ ଅଧିକ । ଲୋକମାନଙ୍କର ଧାରଣା ଯେ ଗିରେଇନେଉଳ ନିଜେ ନିଜେ ତାର ରଙ୍ଗ ପରିବର୍ତ୍ତନ କରିପାରେ । ପ୍ରକୃତରେ ଏହି ଧାରଣା ଭ୍ରମାତ୍ମକ । ଏହାର ରଙ୍ଗ ଧୀରେ ଧୀରେ ବଦଳି ଯାଏ । ସାଧାରଣତଃ ଦେଖାଯାଏ ଯେ ଏହି ଜୀବ ପରିସ୍ଥିତି ଅନୁସାରେ ନିଜ ଦେହର ରଙ୍ଗ ବଦଳ କରିପାରେ । ଆଲୋକର ପ୍ରକାଶ ତଥା ତାପ ମାତ୍ରାର ପରିବର୍ତ୍ତନର ପ୍ରଭାବ ତାର ବାହ୍ୟ ଦେହ ଉପରେ ପଡ଼େ । କୌଣସି ଆକସ୍ମିକ ଘଟଣା ବା ବିଚଳିତ ହେବା ଦ୍ୱାରା ମଧ୍ୟ ତାର ରଙ୍ଗ ବଦଳି ଯାଏ ।

ଗିରେଇ ନେଉଳର ରଙ୍ଗ ପରିବର୍ତ୍ତନ କରିବା ଶକ୍ତି ଉପରେ ବହୁତ ପରୀକ୍ଷା କରାଯାଇଛି । ଏକ ଗିରେଇ ନେଉଳକୁ ଗୋଟିଏ କଳା ବାକ୍ସ ଭିତରେ ବନ୍ଦ କରି ରଖା ଯାଇଥିଲା ଏବଂ ସେହି ବାକ୍ସର ତାପମାତ୍ରା 75 ଡ଼ିଗ୍ରୀ ପର୍ଯ୍ୟନ୍ତ ବଢ଼ାଇ ଦିଆଗଲା । କେତେ ସମୟ ପରେ ଦେଖାଗଲା ଯେ ତାର ରଙ୍ଗ, ସବୁଜ, ହୋଇଗଲା । ଯେତେବେଳେ ଏହାର ତାପମାତ୍ରା 50 ଡିଗ୍ରୀରୁ କମ୍ କରି ଦିଆଗଲା ସେତେବେଳେ ଏହାର ରଙ୍ଗ ବାଦାମୀ ହୋଇଗଲା । ବାକ୍ସର ଗୋଟିଏ ପାଖ ଯେତେବେଳେ ଆଲୋକିତ କରାଗଲା ସେତେବେଳେ ତା' ଦେହର ଅଧେ ଅଂଶରେ ବାଦାମୀ ରଙ୍ଗ ସବୁଜ ଓ ହଳଦିଆ ହେଲା କିନ୍ତୁ ଶରୀରର ଅନ୍ୟ ଅଂଶ ବାଦାମୀ ହିଁ ରହିଗଲା । ବୈଜ୍ଞାନିକମାନେ ପରୀକ୍ଷା କରି କହିଛନ୍ତି, ଯେ ପର୍ଯ୍ୟନ୍ତ ସୂର୍ଯ୍ୟାଲୋକ ଗିରେଇ ନେଉଳର ଆଖିକୁ ନ ଯାଇଛି ସେ ପର୍ଯ୍ୟନ୍ତ ଆଲୋକର ପ୍ରଭାବ ତା' ଉପରେ ପଡ଼େ ନାହିଁ ।

ବୈଜ୍ଞାନିକମାନେ ଏହି ସରୀସୃପ ଉପରେ ବିଭିନ୍ନ ଦିଗରୁ ବହୁତ ପରୀକ୍ଷା କରି ତାର ଏକ ସୁନ୍ଦର ବର୍ଣ୍ଣନା ମଧ୍ୟ ଦେଇଛନ୍ତି । ତିନୋଟି ଗିରେଇ ନେଉଳ ତିନୋଟି ଭିନ୍ନ ଭିନ୍ନ କାଚ ପାତ୍ରରେ ରଖା ଯାଇ ଥିଲା । ପ୍ରଥମ ପାତ୍ର ମଧ୍ୟରେ ଶାଗୁଆ ପତ୍ର ରଖା ଯାଇଥିଲା । ଦ୍ୱିତୀୟ ପାତ୍ରରେ ବାଦାମୀ ଏବଂ ତୃତୀୟ ପାତ୍ରରେ ଧଳା ବାଲି ରଖା ଯାଇଥିଲା । ଗିରେଇନେଉଳ ତିନି ଜଣଙ୍କର ରଙ୍ଗ କିନ୍ତୁ ଏକ ପ୍ରକାର ରହିଲା । ଏଥିରୁ ଜଣାପଡ଼େ ଯେ ଗିରେଇ ନେଉଳର ଶରୀରର ରଙ୍ଗ ଉପରେ ଆଲୋକର ପ୍ରଭାବ ପଡ଼େ । ପରିସ୍ଥିତି ମଧ୍ୟ ତା ଉପରେ କେତେକ

ପ୍ରଭାବ ପକାଇଥାଏ । ଯଦି ଏହି ସରୀସୃପର ଦେହ ଉପରେ ଆଲୋକର କିରଣ ପଡ଼ୁଥିବା ସମୟରେ ନାଲି ଏବଂ ଶାଗୁଆ ରଙ୍ଗର କାଚ ମଝିରେ ରଖି ଦିଆଯାଏ, ତେବେ ନାଲି ଏବଂ ଶାଗୁଆ ରଙ୍ଗର ଆଲୋକ ତା ଉପରେ କିଛି ପ୍ରଭାବ ପକାଇ ପାରେ ନାହିଁ । ତା ରଙ୍ଗ ଯେମିତି ଥିଲା ଠିକ୍ ସେମିତି ରହିବ । କିନ୍ତୁ ଯଦି ତା ଶରୀର ଉପରେ ନୀଳ ଏବଂ ଶାଗୁଆ ମିଶା ନୀଳ ରଙ୍ଗର ଆଲୋକ ନିକ୍ଷେପ କରାଯାଏ, ତେବେ ଶୀଘ୍ର ସେଥିରେ ପରିବର୍ତ୍ତନ ଦେଖାଯାଏ । ଏହି ଆଲୋକ କିରଣର ପ୍ରଭାବ ଫଟୋଗ୍ରାଫିର ପ୍ଲେଟ ଦ୍ୱାରା ଅତି ସୁବିଧାରେ ପରୀକ୍ଷା କରାଯାଇପାରେ ।

ପରୀକ୍ଷା ଦ୍ୱାରା ଏ ପର୍ଯ୍ୟନ୍ତ ଜଣାଯାଇଛି ଯେ ଆଲୋକ କମ୍ବା ତାପମାତ୍ରାର ପ୍ରଭାବରୁ ତଥା ବିଚଳିତ ହେଲେ ଚମେଲିଅନ୍‌ର ରଙ୍ଗ ବଦଳିଯାଏ । କିନ୍ତୁ ଏହି ପରିବର୍ତ୍ତନ ତା' ଚମଡ଼ା ଉପରେ କି ପ୍ରଭାବ ପକାଏ ତାହା ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ରୂପରେ ଜଣାପଡ଼ିନାହିଁ । ପରୀକ୍ଷା କରିବା ପରେ ଜଣାଯାଇଛି ଯେ ତାର ଚମଡ଼ା ଉପରେ ବହୁତ ଛୋଟ ଛୋଟ ଏକ ପ୍ରକାର କଣିକା ଥାଏ, ଯେଉଁଗୁଡ଼ିକ ଏକତ୍ରିତ କମ୍ବା ଅଲଗା ହୋଇଗଲେ ଚମଡ଼ାର ରଙ୍ଗ ବଦଳିଯାଏ । ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ବୈଜ୍ଞାନିକମାନେ ଏହା ଜାଣିବାକୁ ଭଲ ଭାବରେ ପରୀକ୍ଷା କରି ମତ ଦେଇଛନ୍ତି ଯେ ରଙ୍ଗ ପରିବର୍ତ୍ତନ ପାଇଁ ଏହା ବହୁତ ସାହାଯ୍ୟ କରେ ।

ଚମେଲିଅନ୍ ଅଳସୁଆ ଜୀବ ଅଟେ । ଏହା ବହୁତ ଧୀରେ ଧୀରେ ଚଲାବୁଲା କରେ । ତାର ଏପରି ଚାଲିକୁ ଦେଖି ମନେ ହୁଏ ସତେ ଯେପରି ଏହାର ହାତ ଓ ଗୋଡ଼ର ଗଣ୍ଠି ସ୍ଥାନରେ ତେଲ ଦେବାର ଆବଶ୍ୟକତା ଅଛି । ଘଣ୍ଟା ଘଣ୍ଟା ପର୍ଯ୍ୟନ୍ତ ଗୋଟିଏ ଗଛର ଡାଳକୁ ଧରି ସେ ଲଟକି ରହିଥାଏ । କିନ୍ତୁ ଏହାର ଆଖି ସବୁବେଳେ ଇତସ୍ତତଃ ଘୂରୁଥାଏ ଓ ମାଛି କମ୍ବା ପୋକର ସନ୍ଧାନ କରୁଥାଏ । ଏହାର ଆଖି ବହୁତ ବଡ଼ । ଏହା ଉପରେ ଏକ ପରଦା ବିସ୍ତୃତ ହୋଇଥାଏ । ଏହି ଝିଲ୍ଲୀ ବା ପରଦା ଦୁଇ ପତାକୁ ମିଶାଇ ହୋଇଛି । ଏହା ନିଜର ଆଖିକୁ ଚାରିଆଡ଼େ ବୁଲାଇ ପାରେ ଏବଂ କୌଣସି ଦିଗକୁ ଚାହିଁବା ପାଇଁ ଅନ୍ୟ ଆଖି ଉପରେ ନିର୍ଭର କରେ ନାହିଁ । ଫଳରେ ଏହା ଆଗପଛ ବେକକୁ ନ ଘୁରାଇ ମଧ୍ୟ ଦେଖିପାରେ । ଏହାଠାରୁ ବି ଅସାଧାରଣ ହେଉଛି ଏହାର ଜିଭ ଯାହାକୁ ପୂରା ଖୋଲିଦେଲେ ତାର ଦେହଠାରୁ ମୁଣ୍ଡ ପର୍ଯ୍ୟନ୍ତ ଲମ୍ବା ହୋଇଯାଏ । ରବର ପରି ଏହି ଜିଭକୁ ଟାଣିଲେ ତାହା ସଂକୁଚିତ ଓ ପ୍ରସାରିତ ହୋଇଥାଏ । ଏହାର ଜିଭର ଅଗ୍ରଭାଗ ପ୍ରଶସ୍ତ ଅଟେ ଏବଂ ଏଥିରେ ଏକ ପ୍ରକାର ଅଠାଳିଆ ରସ ଥାଏ । ଚମେଲିଅନ୍ ଯେତେବେଳେ କୌଣସି ମାଛିକୁ ଉଡ଼ୁଥିବାର ଦେଖେ, ସେତେବେଳେ ସେ ଧୀରେ ଧୀରେ ତା' ଦିଗକୁ ଅଗ୍ରସର ହୁଏ । ମାଛିଠାରୁ ଦଶ ବାର ସେଣ୍ଟିମିଟର ଦୂରରେ ସେ କିଛି ସମୟ ପାଇଁ

ଅପେକ୍ଷା କରେ ଏବଂ ତା'ପରେ ହଠାତ୍ ଜନ୍ତୁକୁ ତା' ପ୍ରତି ବଢ଼ାଇ ସେ ମାଛିଟିକୁ ଧରିନିଏ ଓ ଅତି ଶୀଘ୍ର ଜିଭକୁ ମାଛି ସହିତ ମୁହଁ ଭିତରକୁ ଟାଣି ଆଣି ତାକୁ ଖାଇଦିଏ ।

ଚମେଲିଅନେଉଳର ଗୋଡ଼ର ପଂଝା ଦୁଇ ଭାଗରେ ବିଭକ୍ତ । ଆଗ ଗୋଡ଼ର ଆଗରେ ଦୁଇଟି ଏବଂ ପଛରେ ତିନୋଟି ଅଙ୍ଗୁଳି ଥାଏ । କିନ୍ତୁ ପଛ ଗୋଡ଼ର ଅଙ୍ଗୁଳିର ଗଠନ ଠିକ୍ ଏହାର ବିପରୀତ ।

ଚଂପେଇ ନେଉଳ ଏକ କଳହପ୍ରିୟ ଜୀବ । ଝଗଡ଼ାକରିବା ସମୟରେ ଏମାନେ ନିଜ ପେଟରେ ପବନ ଭରିଦିଅନ୍ତି ଯାହାଫଳରେ ବହୁତ ମୋଟା ଏବଂ ବଡ଼ଭଳି ଜଣାପଡ଼ନ୍ତି । ଏପରି ପୃଥୁଳ ଶରୀର ଦେଖି ଲୋକମାନେ କହନ୍ତି ଯେ ଏମାନେ କେବଳ ପବନ ପିଇ ବଞ୍ଚିରହନ୍ତି ।

ଅଧିକାଂଶ ଚଂପେଇ ନେଉଳ ଆକାରରେ ଛୋଟ ଥାଆନ୍ତି ଏବଂ ସେମାନଙ୍କ ଲମ୍ବ ପଚିଶି ସେଣ୍ଟିମିଟର ଠାରୁ ଅଧିକ ନୁହେଁ । ମାଡ଼ାଗାସ୍କାର ଦ୍ୱୀପରେ ଦୁଇ ଜାତିର ଚମେଲିଅନେଉଳ ଅଛନ୍ତି ଯେଉଁମାନଙ୍କର ଲମ୍ବ ଷାଠିଏ ସେଣ୍ଟିମିଟର ଠାରୁ ବେଶୀ । ବୌନା ଜାତୀୟ ଚଂପେଇ ନେଉଳ କେବଳ ବାର ସେ.ମି ଲମ୍ବା ଅଟେ । ଏହି ଜାତୀୟ ସ୍ତ୍ରୀ ଝିଟିପିଟିର ଏକାଥରେ ବାରଟି ଛୁଆ ହୁଏ । କେବଳ ଏହି ଜାତିର ଚଂପେଇ ନେଉଳ ଅଣ୍ଡା ଦିଏନାହିଁ, ଛୁଆ ଜନ୍ମକରେ । ସେଇ ଛୁଆ ଜନ୍ମହେବାର ଘଣ୍ଟାକ ଭିତରେ ମାଛି ଧରିବାକୁ ସକ୍ଷମ ହୋଇଥାଏ । ଏଗୁଡ଼ିକ ଅନ୍ୟ ଚଂପେଇ ନେଉଳ ଠାରୁ ବେଶୀ ବଳବାନ ମଧ୍ୟ ହୁଅନ୍ତି, କିନ୍ତୁ ରଙ୍ଗ ବଦଳ କରିବା ଶକ୍ତି ଏମାନଙ୍କର କମ୍ ।

କେତେକ ଜାତିର ପୁରୁଷ ଚମେଲିଅନେଉଳର ଆଖି ଉପରେ ଦୁଇଟି ଲମ୍ବା ହାଡ଼ ବାହାରି ଥାଏ ଯାହାକୁ ଦେଖି ଲୋକମାନେ ଶିଙ୍ଗ ବୋଲି ଧାରଣା କରନ୍ତି । ଏମାନେ ଶିଙ୍ଗଥିବା ଚମେଲିଅନେଉଳ ନାମରେ ପ୍ରସିଦ୍ଧ ।

ବୌନା ଚମେଲିଅନେଉଳ ଦକ୍ଷିଣ ଆଫ୍ରିକାରେ ଦେଖିବାକୁ ମିଳେ । ଏହାର ଦେହ ରଙ୍ଗ ଶାଗୁଆ ଏବଂ ଦେହର ଦୁଇ ପାର୍ଶ୍ୱରେ ନାଲି ରଙ୍ଗର ବଡ଼ ବଡ଼ ଦାଗ ଥାଏ ଏବଂ ସମ୍ପୂର୍ଣ୍ଣ ଶରୀର ଗାଢ଼ ନାଲି ରଙ୍ଗରେ ଚର୍ଚ୍ଚିତ ହୋଇଥାଏ । ରାତିରେ ଏହାର ରଙ୍ଗ ଏହିପରି ଥାଏ କିନ୍ତୁ ଦିନରେ ସାଗୁଆ ରଙ୍ଗ ଅଧିକା ଦେଖାଯାଏ ଏବଂ ଶରୀରର ଦୁଇ ପାର୍ଶ୍ୱରେ ଥିବା ନାଲି ରଙ୍ଗରେ କେତେକ ନୀଳ ଛିଟା ଦେଖାଯାଏ । ରାଗିଗଲେ ତାର ରଙ୍ଗ ଫିକା ସାଗୁଆ ହୋଇଯାଏ ଏବଂ ନାଲି ଅଂଶରେ ବାଦାମୀ ରଙ୍ଗ ଆସିଥାଏ । କେବେ କେବେ ସଂପୂର୍ଣ୍ଣ ଦେହ କଳା ହୋଇଯାଏ । ଏମାନେ ଶୀତ ଦିନରେ ମଧ୍ୟ ଆରାମରେ ରହିପାରନ୍ତି ।

ସାଧାରଣତଃ ଚମେଲିଅନେଉଲ ଉତ୍ତର ଆଫ୍ରିକା, ସିରିଆ, ଏସିଆ ମାଇନର, ସ୍ପେନ, ଦକ୍ଷିଣ ଭାରତ, ଶ୍ରୀଲଙ୍କା ଆଦି ଦେଶରେ ଦେଖିବାକୁ ମିଳନ୍ତି । କୌଣସି ଛଡ଼ା ଅନ୍ୟ ସମସ୍ତ ଜାତିର ଚଂପେଇ ନେଉଳ ଅଣ୍ଡା ଦଅନ୍ତି । ଅକ୍ଟୋବର ମାସରେ ସ୍ତ୍ରୀ ଚମେଲିଅନେଉଳ ଗଛ ଡାଳରୁ ଓହ୍ଲାଇଆସି ଗଛ ନିକଟରେ ଏକ ଗାତ ଖୋଳି ସେଥିରେ ଅଣ୍ଡା ଦିଏ । ବସନ୍ତ ଋତୁରେ ଏହି ଅଣ୍ଡାରୁ ଛୁଆ ବାହାରେ । ସେହି ଗାତରେ ତାହାର ମା ମଧ୍ୟ ରହିଥାଏ କାରଣ ଏମାନେ ଶୀତ ସହି ପାରନ୍ତି ନାହିଁ । ପୁଣି ଗରମ ଆସିଲେ ସେମାନେ ଗାତରୁ ବାହାରି ବାହାରକୁ ଆସନ୍ତି ।

ଚଂପେଇ ନେଉଳ ମଧ୍ୟ ପାଳନ କରାଯାଏ । ଏମାନେ କୌଣସି ପାତ୍ରରୁ ପାଣି ପିଅନ୍ତି ନାହିଁ । ଗଛର ପତ୍ର ଉପରେ ପଡ଼ିଥିବା ଜଳ ବିନ୍ଦୁକୁ ଏମାନେ ଚାଟି ପିଅନ୍ତି । କୀଟପତଙ୍ଗ, ପ୍ରଜାପତିର ଅଣ୍ଡାରୁ ବାହାରିଥିବା ଛୋଟ ଛୋଟ ଛୁଆ ପ୍ରଭୃତି ଏମାନଙ୍କର ଖାଦ୍ୟ । କୌଣସି ଏକ ସମ୍ବାଦ ପତ୍ରର ସମ୍ବାଦଦାତା ଲେଖିଥିଲେ ଯେ ସିଝା ହୋଇଥିବା ବନ୍ଧା କୋବିର ପତ୍ର ଖାଇ ଏକ ଚଂପେଇ ନେଉଳ ବହୁଦିନ ପର୍ଯ୍ୟନ୍ତ ଜୀବିତ ରହିଥିଲା । ସେ ଆହୁରି ଲେଖିଥିଲେ, ଏମାନେ ଛୋଟ ଛୋଟ କୋବି ଖଣ୍ଡକୁ ଜିଭ ଲଗାଇ ନଖାଇ ମୁହଁ ଖୋଲି ଖାଇବାକୁ ଲାଗିଲେ । ଏପର୍ଯ୍ୟନ୍ତ ସେ ଜୀବିତ ଅଛି ଏବଂ ପାଞ୍ଚ ମାସ ହେଲା ପାଣିରେ ସିଝିଥିବା କୋବି ପତ୍ରକୁ ଖାଇ ରହିଛି । ପ୍ରତ୍ୟେହ ଏହାକୁ ଟଟକା କୋବି ଦିଆଯାଏ ଏବଂ ଏହାକୁ ଖଣ୍ଡ ଖଣ୍ଡ କରି କାଟି ପିଞ୍ଜରାରେ ରଖି ଦିଆଗଲେ ସେ ତାର ଗନ୍ଧ ବାରି ପାରି ତାକୁ ଖାଇବା ପାଇଁ ଧୀରେ ଧୀରେ ଆଗେଇ ଯାଏ । ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଓ ଏଥିରୁ ଜଣାପଡେ ଯେ ଏହି ଜୀବଙ୍କର ବି ବୁଦ୍ଧିର ବିକାଶ ହେବା ସମ୍ଭବ ।

## ପାଦହୀନ ଝିଟିପିଟି :

ଏହି ଜାତିସ୍ଥ ଅନ୍ଧ ଝିଟିପିଟି ବହୁତ ପ୍ରସିଦ୍ଧ ଅଟେ । ଏହା ଇଂଲଣ୍ଡ, ପଶ୍ଚିମ ଏସିଆ ତଥା ଅଷ୍ଟ୍ରେଲିଆରେ ବହୁତ ସଂଖ୍ୟାରେ ଦେଖିବାକୁ ମିଳେ । ଏହାର ଆକାର ଗୋଲ ଓ ଲମ୍ବା । ସେଥିପାଇଁ ଲୋକେ ଏହାକୁ ସାପ ବୋଲି ମନେ କରନ୍ତି । ସାପର ବିପରୀତ ଏହାର ବାହାରେ କାନ ଅଛି ଏବଂ ଏହାର ଆଖି ଉପରେ ପଲକ ଅଛି । ଏହି ଦୁଇଟି ବସ୍ତୁ ଥିବା ହେତୁ ଏହାକୁ ଚିହ୍ନି ହୁଏ । ଏମାନଙ୍କ ବିଷୟରେ ଅନେକ କିମ୍ବଦନ୍ତୀ ଅଛି । ଗୋଟିଏ ପ୍ରାଚୀନ ପୁସ୍ତକରେ ଲେଖା ଅଛି ଯେ ଏହି ଜୀବ ଗାଈକୁ ଶୋଷି ନିଏ ଏବଂ ନିଜର ଲାଞ୍ଜକୁ ଗାଈ ପାଦରେ ଗୁଡ଼େଇ ଦିଏ । ଏହି ପୁସ୍ତକ ଅନୁସାରେ ଏହି ଅନ୍ଧ ଝିଟିପିଟି ଗାଈକୁ କାମୁଡ଼ି ଦେଲେ ଗାଈ ମରିଯାଏ ।

ଏବେ ବି ଅନେକ ଲୋକ ଅଛନ୍ତି ଯେଉଁମାନେ ଏହି ଅନ୍ଧ ସରୀସୃପକୁ ସାଇପାର ସାପଠାରୁ ବି ଅଧିକ ବିଷାକ୍ତ ବୋଲି ମନେ କରନ୍ତି । ଯଦିଓ ଏହା ଅତ୍ୟନ୍ତ ଅନିଷ୍ଟକାରୀ

ତଥାପି ଏହାକୁ ସ୍ପର୍ଶ କଲେ ସୁଦ୍ଧା ଏହା କାହାକୁ କାମୁଡ଼େ ନାହିଁ । ଦୂରରୁ ଜଣାପଡ଼େ ଯେ ଏହି ସରୀସୃପ ଅନ୍ଧ । ସେଥିପାଇଁ ଏହାକୁ ଲୋକେ ଅନ୍ଧ ସରୀସୃପ ବୋଲି କହନ୍ତି । କିନ୍ତୁ ତାକୁ ନିରୀକ୍ଷଣ କଲେ ଜାଣି ହୁଏ ଯେ ତାର ଆଖି ଅଛି । ଏହାର ଆଖି ଖୁବ୍ ଛୋଟ ତଥାପି ଏହା ବହୁତ ଦୂରରୁ ଦେଖିପାରେ ।

ଚିତ୍ର—16 ଦର୍ପଣ ସର୍ପ

ବଡ଼ ହୋଇଯିବା ପରେ ଏହି ସରୀସୃପ ପ୍ରାୟ 45 ସେ:ମି: ଲମ୍ବ ହୋଇଥାଏ । ଏହା ସାଧାରଣତଃ ବାଦାମୀ ରଙ୍ଗର ହୋଇଥାଏ କିନ୍ତୁ ବଡ଼ ପୁରୁଷ ସରୀସୃପ ପିଠି କଳା ହୁଏ ଏବଂ ତା' ଉପରେ ଛୋଟ ଛୋଟ ନୀଳ ଛିଟା ଧାଡ଼ି ଧାଡ଼ି ହୋଇ ସୁସଜ୍ଜିତ ରହିଥାଏ । ଛୁଆମାନଙ୍କର ପିଠି ଧଳା ଏବଂ ପେଟ କଳା ରଙ୍ଗର ହୋଇଥାଏ । ପିଠି ମଝିରେ ଲମ୍ବା କଳା ଗୋଲକାର ଦାଗ ପଡ଼ିଥାଏ । ଏହି କଳା ଦାଗ କେବଳ ସ୍ତ୍ରୀ ସରୀସୃପ ନିକଟରେ ଦେଖିବାକୁ ମିଳେ । ଏହାର ସଂପୂର୍ଣ୍ଣ ଦେହ ଛୋଟ ଛୋଟ ଲୋମରେ ଆବୃତ ହୋଇଥାଏ ଏବଂ ସାପର ଖୋଳପା ସଦୃଶ ଏହା ସଙ୍ଗରେ ତାର ଲୋମ ସବୁ ଝଡ଼ି ପଡ଼େ । ଯଦି କେହି ଏହାକୁ ଧରି ପକାଏ ତେବେ ଏହା ସଂକୁଚିତ ହୋଇ ବହୁତ ଟାଣ ହୋଇଯାଏ । ଏହାର ଦେହ କାନ୍ଥ ଉପରେ ବୁଲୁଥିବା ଝିଟିପିଟିର ଲାଞ୍ଜ ପରି ହୋଇଥାଏ । ଏହି ଅନ୍ଧ ସରୀସୃପର ଭାଙ୍ଗି ଯାଇଥିବା ଦେହ ଗୋଟିଏ ମାସ ଭିତରେ ପୁଣି ସଂପୂର୍ଣ୍ଣ ହୋଇଯାଏ ।

ଯଦିଓ ଏମାନେ ପଙ୍କ କାମ୍ବା ମାଟି ଭିତରେ ରହିବାକୁ ପସନ୍ଦ କରନ୍ତି ତଥାପି ଖରାରେ ଆଗ୍ରହ କରି ଶୋଇବା ପାଇଁ ଏମାନେ ବାହାରକୁ ମଧ୍ୟ ଆସନ୍ତି । ଏହା ଜିଆ ଓ ଅନ୍ୟ ଅନେକ ପ୍ରକାର କୀଟପତଙ୍ଗଙ୍କୁ ଧରି ଦାନ୍ତରେ ଚୋବାଇ ଖାଏ । ଏହି ଦିଗରୁ ସେ ସାପଠାରୁ ଭିନ୍ନ । କାରଣ ସାପ ତାହାର ଖାଦ୍ୟକୁ ଏକାଥରେ ଗିଳିଦିଏ ।

ସେପ୍ଟେମ୍ବର ମାସ ଆରମ୍ଭରେ ସାଧାରଣତଃ ଏହା କୋଡ଼ିଏଟି ପର୍ଯ୍ୟନ୍ତ ଛୁଆ ଦିଏ । ଏହି ଛୁଆ 5 ରୁ 7 ସେ.ମି. ଲମ୍ବା ହୁଏ । ଏହା ଖୁବ୍ ଆସ୍ତେ ଆସ୍ତେ ବଢ଼େ ଓ ଚାରି ପାଞ୍ଚ ବର୍ଷ ପରେ ଯାଇ ପୂରା ଲମ୍ବା ହୁଏ । ଏହି ଜାତିର ଏକ ସରୀସୃପକୁ ଧରି ଜଣେ ବ୍ୟକ୍ତି ତାକୁ 23 ବର୍ଷ ପର୍ଯ୍ୟନ୍ତ ନିଜପାଖରେ ରଖିଥିଲା । ଏହାପରେ ସେ ମରିଯାଇଥିଲା ।

ଶୀତ କାଳରେ ଏମାନେ ମାଟି ଭିତରେ ପଶିଯାଆନ୍ତି । ଅକ୍ଟୋବର ଆରମ୍ଭରେ ଏହା ମାଟିର ବହୁତ ତଳକୁ ଗାତରେ ପଶିଯାଏ ଏବଂ ଏହି ଗାତରେ ଶୀତ ଦିନ ସାରା ଶୋଇରହେ । ପୁଣି ମାର୍ଚ୍ଚ ମାସ ଶେଷରେ ଧୀରେ ଧୀରେ ବାହାରକୁ ଆସେ । ଏହି ଅନ୍ଧ ସରୀସୃପର ପାଦ ନାହିଁ ।

**ଦର୍ପଣ ସର୍ପ** :—ଅନ୍ୟ ଏକ ପ୍ରକାର ପାଦହୀନ ଓ କାଚପରି ମସୃଣ ସରୀସୃପ ଅଛି । ତାହାକୁ ଦର୍ପଣ ସର୍ପ ମଧ୍ୟ କହନ୍ତି । ଏମାନେ ଦକ୍ଷିଣ-ପୂର୍ବ ଇଉରୋପ, ଦକ୍ଷିଣ ପଶ୍ଚିମ ଏସିଆ ତଥା ଉତ୍ତର ଆଫ୍ରିକାରେ ଦେଖିବାକୁ ମିଳନ୍ତି । ଏହାର ଆଗ ପାଦ ନାହିଁ ଏବଂ ପଛ ପାଦ ମଧ୍ୟ ବହୁତ ସାନ ହୋଇଥାଏ ।

ଦର୍ପଣ ସର୍ପ 1.20 ମିଟର ପର୍ଯ୍ୟନ୍ତ ଲମ୍ବା ହୁଏ ଏବଂ ଏହାର ଦେହ ଗୁରି କୋଣିଆ ହଳଦିଆ ଓ ବାଦାମୀ ରଙ୍ଗର ଚମଡ଼ାରେ ଆବୃତ ହୋଇଥାଏ । ଏହାର ବାହ୍ୟରୂପ ଅତି ଚିକ୍‌କଣ ଅଟେ । ସେଥିପାଇଁ ମନେ ହୁଏ ଯେ ଏହାର ଦେହକୁ ଯେପରି ପାଲିସ କରାଯାଇଛି । ଦର୍ପଣ ସର୍ପର ଦେହ କଠିନ ହୋଇଥିବାରୁ ସେ ନିଜ ଦେହକୁ ସହଜରେ ବଙ୍କାଇ ପାରେ ନାହିଁ ।

ଚିତ୍ର—17 ମେକସିକୋର ବିଷାକ୍ତ ଚିହ୍ନଯୁକ୍ତ ଝିଟିପିଟି

ଦର୍ପଣ ସର୍ପ ଅତ୍ୟନ୍ତ ଭୟଂକର ଅଟେ । କିନ୍ତୁ ବନ୍ଧନରେ ରଖିଲେ ଏହା କାଳକ୍ରମେ ପୋଷା ମାନିଯାଏ ଏବଂ ହାତ ଉପରେ ରଖିଥିବା ବସ୍ତୁକୁ ମଧ୍ୟ ଖାଇଯାଏ । ସେ ମୂଷା, ଚୂଚୂନ୍ଦ୍ରା ଆଦି ଛୋଟ ଜୀବକୁ ଖାଏ ଏବଂ କେବେ କେବେ ଘାଇପରି ସାପକୁ ବି ମାରି ଖାଇଯାଏ । କେବେ କେବେ ସେ ଶାମୁକା ଜାତୀୟ ପ୍ରାଣୀ, ପକ୍ଷୀର ଅଣ୍ଡା ଏବଂ ପକ୍ଷୀର ଛୁଆକୁ ଧରି ବି ଖାଇ ଦେଇଥାଏ ।

ଏହାକୁ ଦର୍ପଣ ସର୍ପ କୁହାଯାଏ କାରଣ ଏହାର ଦେହ କାଚ ପରି କଠିନ ଏବଂ ଭଙ୍ଗୁର । ଏହା ନିଜର ଲାଞ୍ଜକୁ ଦେହଠାରୁ ଅଲଗା କରି ଦେଇପାରେ । ଏହାର ଦେହର ଚମଡ଼ା କାଚ ପରି ଉଜ୍ଜ୍ୱଳ ହୋଇଥାଏ । ଏକ କିମ୍ବଦନ୍ତୀ ଅଛି ଯେ ଦର୍ପଣ ସର୍ପର ଲାଞ୍ଜ ଭାଙ୍ଗିଯିବା ପରେ ସେ ତାର ଲାଞ୍ଜକୁ ଖୋଜେ ଏବଂ ତାକୁ ପୁଣି ତାର ଦେହ ସହିତ ଯୋଡ଼ିଦିଏ । ସେହିପରି ସେହି ଲାଞ୍ଜ ମଧ୍ୟ ଘୋଷାରି ଘୋଷାରି ତାର ମୂଳିକ ନିକଟକୁ ଯାଇ ତା' ଦେହରେ ଲାଗିଯାଏ । ଦୁର୍ଭାଗ୍ୟବଶତଃ ଏପରି ଘଟଣା ଏପର୍ଯ୍ୟନ୍ତ ଦେଖାଯାଇନାହିଁ ।

ଅଷ୍ଟ୍ରେଲିଆର ନିଉଗିନିରେ ଆଉ ଏକ ପ୍ରକାରର ପଦହୀନ ସରୀସୃପ ଦେଖିବାକୁ ମିଳେ । ଏମାନଙ୍କ ମଧ୍ୟରୁ କେତେକଙ୍କ ପାଦ ମୋଟେ ନାହିଁ ଏବଂ ଆଉ କେତେକଙ୍କ ପଛ ଭାଗରେ କେବଳ ପାଦର ଚିହ୍ନ ଅଛି । ଏହି ସରୀସୃପ 60 ସେ.ମି. ଲମ୍ବା ହୁଏ ଏବଂ ଏହାର ଦୁଇ ତୃତୀୟାଂଶ ଲାଞ୍ଜ ସହଜରେ ଛିଣ୍ଡିଯାଏ । ବହୁ ଲୋକ ଏହାକୁ ସାପ ବୋଲି ମନେ କରନ୍ତି ।

ପାଦହୀନ ସରୀସୃପମାନଙ୍କ ମଧ୍ୟରେ ଆମେରିକାର ସରୀସୃପ ଅତ୍ୟନ୍ତ ବିଚିତ୍ର ଅଟେ । ଏହାର ଦେହର ପଛ ଭାଗରେ କଳା କଳା ଦାଗ ଥାଏ । ଏହି ଅଦ୍ଭୁତ ସରୀସୃପ 45 ସେ.ମି ଲମ୍ବା ହୁଏ ଏବଂ ପିମ୍ପୁଡ଼ି ଗାତରେ ରହିବାକୁ ପସନ୍ଦ କରେ । କେଟ୍ ସାହେବଙ୍କ ଅନୁସାରେ ଏହି ସରୀସୃପକୁ ଏଠାକାର ଅଧିବାସୀମାନେ ପିମ୍ପୁଡ଼ିର ବନ୍ଧୁ କହନ୍ତି । ଲୋକମାନଂକର ଧାରଣା ଯେ ଏହା ବିଷାକ୍ତ । ପ୍ରକୃତରେ ଏହା ବିଷାକ୍ତ ନୁହେଁ । ଆମେରିକା ଅଧିବାସୀମାନେ କହନ୍ତି ଯେ ପିମ୍ପୁଡ଼ିମାନେ ଏହାର ବଡ଼ ବନ୍ଧୁ ଅଟନ୍ତି ଓ ଯଦି ଏହି ସରୀସୃପ ପିମ୍ପୁଡ଼ିର ଗାତ ଛାଡ଼ି ଚାଲିଯାଏ ତେବେ ପିମ୍ପୁଡ଼ିମାନେ ମଧ୍ୟ ଗାତ ଛାଡ଼ି ପଳାନ୍ତି ।

# ଉଡୁଥିବା ଝିଟିପିଟି

ସରୀସୃପ ଜଗତର ଜୀବମାନେ ଉଡ଼ିବା ପାଇଁ ବହୁତ ଚେଷ୍ଟା କରୁଛନ୍ତି ଏବଂ କେହି କେହି ଏଥିରେ ସଫଳତା ମଧ୍ୟ ପାଇଛନ୍ତି । ପ୍ରାଚୀନ ଯୁଗର 'ଟେରୋଡ଼େକାଟାଇଲ' ଉଡିବା ପାଇଁ ସକ୍ଷମ ହୋଇଥିଲେ କିନ୍ତୁ କେତେକ କାରଣବଶତଃ ଖୁବ୍ ଶୀଘ୍ର ଏହା ପୃଥିବୀ ପୃଷ୍ଠରୁ ଲୋପ ପାଇଗଲେ । ଆଜି ଆମେ କେବଳ ସେମାନଙ୍କର ଶରୀରବିଶେଷ ପାଇଛୁ । ଆଧୁନିକ କାଳରେ ବି ଏକ ସରୀସୃପ ଉଡ଼ିବା ପାଇଁ ସକ୍ଷମ ହୋଇଛି । ଏହି ଶ୍ରେଣୀର ବାର ପ୍ରକାର ଜାତିର ସରୀସୃପ ଅଛନ୍ତି । ଏମାନେ ଭାରତର ମାଡ୍ରାସ, ମାଲୟ, ସୁମାତ୍ରା, ଜାଭା ତଥା ବୋର୍ଣ୍ଣିଓରେ ଦେଖିବାକୁ ମିଳନ୍ତି । ଏମାନେ ପ୍ରାୟ 25 ସେ.ମି. ଲମ୍ବା ହୁଅନ୍ତି ଏବଂ ଏମାନଙ୍କ ଲାଞ୍ଜ କେବଳ 16 ସେ.ମି. ହୁଏ । ବାସ୍ତବରେ ଏହା ଉଡି ପାରେନା କିନ୍ତୁ ତା' ଦେହର ଦୁଇ ପାର୍ଶ୍ବରେ ବାହାରି ଥିବା ଚମଡ଼ା ସାହାଯ୍ୟରେ କୌଣସି ଉଚ୍ଚ ସ୍ଥାନରୁ ଡେଇଁ ସେ 20 ମିଟର ବା ଅଧିକ ଦୂର ପବନରେ ଭାସିଯାଇ ପାରେ । ଏହା ପରେ ସେ ତଳେ ପଡ଼ିଯାଏ । ଦୁଇ ପାର୍ଶ୍ବରେ ବଢ଼ିଥିବା ଚମଡ଼ାକୁ ପଞ୍ଜରାର ହାଡ଼ ସାହାଯ୍ୟରେ ସେ ପକ୍ଷ ପରି ମେଲାଇପାରେ । ଏହି ହାଡ଼କୁ ଆଗ ଓ ପଛକୁ ବା ଏପାଖ ସେପାଖ କରି ସେ ହଲେଇପାରେ । ବିଶ୍ରାମ କରିବା ସମୟରେ ହାଡ଼ ତଥା ପକ୍ଷ ତା' ପିଠି ଏବଂ ବେକର ଦୁଇ ପାଖରେ ରହିଥାଏ କିନ୍ତୁ ପବନରେ ଭାସିବା ସମୟରେ ଏହା ଉଡାଜାହାଜର ଡେଣା ପରି ମେଲାଇ ଦିଆଯାଏ । ମାଲୟ ଉପଦ୍ୱୀପରେ ଉଡୁଥିବା ସରୀସୃପର ଲମ୍ବ 30 ସେ.ମି. ହୁଏ । ଚାଲବୁଲା କରିବା ସମୟରେ ଏହାର କୌଣସି ବିଶେଷତ୍ବ ଦେଖାଯାଏ ନାହିଁ, କିନ୍ତୁ ଉଡ଼ିବା ସମୟରେ ଏହା ଏକ ସୁନ୍ଦର ପ୍ରଜାପତି ପରି ହୋଇଯାଏ କାରଣ ତାର ପକ୍ଷ ଗାଢ଼ ନାରଙ୍ଗୀ ରଙ୍ଗର ହୋଇଥାଏ ଏବଂ ସେଥିରେ ଅନେକ ପ୍ରକାର ରଙ୍ଗର କାଳି ଧାଡ଼ି ଧାଡି ହୋଇ ରହିଥାଏ ।

ଦୂରରୁ ଏହା ଅନ୍ୟ ଝିଟିପିଟି ପରି ଜଣା ପଡ଼ିଲେ ବି ପକ୍ଷ ଏବଂ ପଞ୍ଜରାର ହାଡ଼ ପାଇଁ ଏହା ଅନ୍ୟ ଝିଟିପିଟି ଠାରୁ ଭିନ୍ନ ଜଣାଯାଏ । ଏହାର ଦେହର ରଙ୍ଗ ଗାଢ଼ ବାଦାମୀ । ସେଥିରେ କଳା କଳା ଗାର ପଡ଼ିଥାଏ । ଏମାନେ ଘନ ଜଙ୍ଗଲରେ ରହିଥାନ୍ତି । ପ୍ରଜାପତି ପରି ଏହା ରଙ୍ଗ ବିରଙ୍ଗ ହୋଇଥିବା ହେତୁ ରଙ୍ଗବେରଙ୍ଗର ଫୁଲ ଭିତରେ ଏହାକୁ ଲୁଚିଯିବା ପାଇଁ ସୁବିଧା ହୁଏ । ସେଥିପାଇଁ ଏହାର ଶତ୍ରୁ ଏହାକୁ ସହଜରେ ଧରିପାରେ ନାହିଁ ।

# କୁମ୍ଭୀର

କୁମ୍ଭୀର ସହିତ ପ୍ରତ୍ୟେକ ମନୁଷ୍ୟ ପରିଚିତ । ଏହି ଜନ୍ତୁ ନିକଟକୁ ଯିବାର ସାହାସ କାହାରି ନାହିଁ । ଏମାନେ ମାଟିରେ ସହଜରେ ଚାଲିପାରନ୍ତି ନାହିଁ ଓ ସେଇଥିପାଇଁ ସର୍ବଦା ପାଣିରେ ପଡ଼ିଥାନ୍ତି ଏବଂ ଏପଟ ସେପଟକୁ ପହଁରୁଥାନ୍ତି । ତାର ନାକ ଓ ଆଖି, ମୁଣ୍ଡ ଉପରକୁ ଉଠିଥାଏ । ସେଥିପାଇଁ ପହଁରିବା ସମୟରେ ନିଜର ଦେହକୁ ପାଣି ଭିତରେ ରଖି ମଧ୍ୟ ସେ ନିଶ୍ୱାସ ନେଇପାରେ । ଚତୁର୍ଦ୍ଦିଗକୁ ଦୃଷ୍ଟି ମଧ୍ୟ ରଖିପାରେ । ଏହି ଜୀବର ଦାନ୍ତ ଅତ୍ୟନ୍ତ ଭୟଙ୍କର ଅଟେ । ଦାନ୍ତ ସବୁ ମାଢ଼ୀ ଭିତରେ ଶକ୍ତ ଭାବରେ ଲାଗି ରହିଥାଏ । ଦାନ୍ତ ଭାଙ୍ଗିଗଲା ପରେ ପୁଣି ତା ସ୍ଥାନରେ ନୂଆ ଦାନ୍ତ ବାହାରେ ।

କୁମ୍ଭୀର ଜାତିର ସବୁ ଜୀବ ଅଣ୍ଡାରୁ ଜନ୍ମ ହୁଅନ୍ତି । ଅଣ୍ଡାର ଉପର ଆବରଣ ଧଳା ରଙ୍ଗର ହୋଇଥାଏ । ଅଣ୍ଡା ଭିତରେ ଥିବା ଛୁଆର ନାକ ପାଖରେ କଣ୍ଟାପରି ଥାଏ । ଏହା ସାହାଯ୍ୟରେ କୁମ୍ଭୀର ଶିଶୁ ଅଣ୍ଡାର ଆବରଣକୁ ଭାଙ୍ଗି ବାହାରକୁ ବାହାରି ଆସେ । ବାହାରି ଆସିବାର କେତେ ଦିନ ପରେ ଏହି ଦାନ୍ତ ପଡ଼ିଯାଏ ।

କୁମ୍ଭୀର ବାର ପ୍ରକାର ଜାତିର ହୁଅନ୍ତି । ଏମାନେ ଆଫ୍ରିକା, ମାଡ଼ାଗାସ୍କାର, ଦକ୍ଷିଣପୂର୍ବ ଏସିଆ, ଉତ୍ତର ଅଷ୍ଟ୍ରେଲିଆ ଓ ଆମେରିକାରେ ଦେଖାଯାଆନ୍ତି । ଆଫ୍ରିକାର ନୀଳନଦୀର କୁମ୍ଭୀରକୁ ପ୍ରାଚୀନ ମିଶରବାସୀମାନେ ଶ୍ରଦ୍ଧାପୂର୍ଣ୍ଣ ଦୃଷ୍ଟିରେ ଦେଖୁଥିଲେ । କେତେକ ସହରରେ ସେମାନଙ୍କୁ ପାଳନ ମଧ୍ୟ କରାଯାଉଥିଲା । ତାର କାନ ଓ ଆଗ ପାଦରେ ସୁନାର ବଳା ଓ ବହୁମୂଲ୍ୟ ଅଳଙ୍କାରମାନ ପିନ୍ଧାଇ ଦିଆଯାଉଥିଲା ଓ ମରିବାପରେ ତାର ଶବକୁ ସୁଗନ୍ଧ ବସ୍ତ୍ରରେ ଆବୃତ କରି ସମାଧି ଦିଆଯାଉଥିଲା । ମିଶରବାସୀମାନେ ଏହାକୁ ଖୁବ୍ ଭଲ ଭାବରେ ଯତ୍ନ କରୁଥିଲେ । ହେରୋଡୋଟାସ କହିଛନ୍ତି ଯେ ଲୋକମାନେ କୁମ୍ଭୀରକୁ ନିଆଁରେ ସେକା ମାଂସ, ରୋଟିର ଖଣ୍ଡ ଏବଂ ମଦ ଖାଇବା ପାଇଁ ଦେଉଥିଲେ ।

ଚିତ୍ର—1 ଆମେରିକାର ମଗର (ଏଲିଗେଟର) ତଥା ଘଡ଼ିଆଳର ମୁଣ୍ଡ

ନୀଳ ନଦୀର ମଗର ନରଭକ୍ଷୀ ଥିଲେ । ତେଣୁ ସେଠାରେ ଥିବା ମନୁଷ୍ୟ ସର୍ବଦା ଭୟଭୀତ ହୋଇ ରହୁଥିଲେ । ଲୋକମାନେ ଭୟରେ କୁମ୍ଭୀର ରହୁଥିବା ସ୍ଥାନ ଛାଡ଼ି

ଚାଲି ଯାଉଥିଲେ । କଥିତ ଅଛି ଯେ, ଏକଦା ଏକ କୁମ୍ଭୀର ଜଣେ ଅଶ୍ୱାରୋହୀଙ୍କୁ ଘୋଡ଼ା ଉପରୁ ଟାଣି ନେଇ ମାରି ଦେଇଥିଲା । ପରେ ଗୋଟିଏ କୁମ୍ଭୀରର ପେଟ ଭିତରୁ ପନ୍ଦର ସେର ସୁନା ବାହାରି ଥିଲା । ଏଥିରୁ ଜଣାଯାଏ ଯେ ସେ ମନୁଷ୍ୟଙ୍କୁ ଖାଇଥିଲା । ଆଉ ଏକ ଘଡ଼ିଆଳର ପେଟ ଭିତରୁ ଏଗାରପଟ ଚୂଡ଼ୀ, ତିନୋଟି ସୁନାର ବଡ଼ ବାଜୁବନ୍ଧ, ଗଳାର ହାର, ହାତ ଓ ପାଦର ଚଉଦଟି ହାଡ଼ ଏବଂ ତିନୋଟି ସ୍ତନ୍ୟପାୟୀ ଜୀବଙ୍କର ମେରୁଦଣ୍ଡର ହାଡ଼ ବାହାରିଥିଲା । ଏହି ସବୁ ବସ୍ତୁକୁ 1923 ମସିହା ମାର୍ଚ୍ଚ ମାସରେ ଲଣ୍ଡନର ଚିଡ଼ିଆଖାନାରେ ପ୍ରଦର୍ଶନ କରାଯାଇଥିଲା ।

କୁମ୍ଭୀରର ଚମଡ଼ା ବହୁତ କାମରେ ଲାଗେ । ପ୍ରାଚୀନ ମିଶରବାସୀମାନେ ଏହି ଚମଡ଼ାରେ ସେମାନଙ୍କର ଅସ୍ତ୍ର ଓ ବସ୍ତ୍ର ନିର୍ମାଣ କରୁଥିଲେ । କିଛି ଲୋକ ଏମାନଙ୍କର ମାଂସକୁ ମଧ୍ୟ ଖାଆନ୍ତି । ମିଷ୍ଟର ମେଡ଼େନ ଲେଖିଛନ୍ତି ଯେ ଏମାନଙ୍କର ମାଂସ କଙ୍କଡ଼ାର ମାଂସ ପରି ଜଣାପଡ଼େ ଏବଂ ତାର ସ୍ୱାଦ ମଧ୍ୟ କଂକଡ଼ା ମାଂସ ପରି ହୁଏ । ଅନ୍ୟ କେତେକଙ୍କ ମତ ଯେ, ଏହାର ମାଂସ ସୁରଜଓନ ମାଛର ମାଂସ ପରି । ଏହାର ସ୍ୱାଦ ଯାହା ହେଉନା କାହିଁକି ବହୁତ କମ୍ ଲୋକ ଏହାକୁ ଖାଆନ୍ତି ।

ଚିତ୍ର—2 ଭାରତୀୟ କୁମ୍ଭୀରର ମୁହଁ

ନୀଳ ନଦୀର କୁମ୍ଭୀରର ଲମ୍ବ 5.5 ମିଟର ହୋଇଥାଏ । ଏମାନେ ଦିନରେ ବାଲିରେ ଶୋଇବା ପାଇଁ ପାଣିରୁ ବାହାରି ଆସନ୍ତି ଏବଂ ମୁହଁ ଖୋଲି ପଡ଼ି ରହିଥାନ୍ତି । ଏହାର ମୁହଁ ଉପରେ ଛୋଟ ଛୋଟ ପକ୍ଷୀ ଆସି ବସନ୍ତି ଏବଂ ଏହା ମୁହଁରେ ରହିଥିବା ଛୋଟ ଛୋଟ କୀଟପତଙ୍ଗଙ୍କୁ ଆନନ୍ଦର ସହିତ ଖାଆନ୍ତି । କୁମ୍ଭୀର ବହୁତ ଆରାମରେ ଚୁପ ଚାପ ପଡ଼ିଥାଏ ।

ଚିତ୍ର—3 ନୀଳ ନଦୀର କୁମ୍ଭୀର

ବସନ୍ତ ଋତୁରେ ସ୍ତ୍ରୀ କୁମ୍ଭୀର ବାଲିରେ ଏକ ଗାତ ଖୋଳି ସେଥିରେ 40 ରୁ 60 ପର୍ଯ୍ୟନ୍ତ ଅଣ୍ଡା ଦିଏ । ଏହା ପରେ ସେ ଗାତକୁ ଆବୃତ କରିଦିଏ । କେବେ କେବେ ଏପରି ମଧ୍ୟ ଦେଖାଯାଏ ଯେ ସ୍ତ୍ରୀ କୁମ୍ଭୀର ସେହି ସ୍ଥାନରେ ବସି ରହେ । କୁମ୍ଭୀର ଶିଶୁ 4 ରୁ 6 ସପ୍ତାହ ପରେ ଅଣ୍ଡାରୁ ବାହାରେ । ସ୍ତ୍ରୀ କୁମ୍ଭୀର ବାଲି ଖୋଳି ଶିଶୁକୁ ବାହାରକୁ ବାହାରକରି ଆଣେ । ଅଣ୍ଡାରୁ ବାହାରିବା ମାତ୍ରେ ଏହି କୁମ୍ଭୀର ଛୁଆଗୁଡ଼ିକ ପାଣି ଭିତରକୁ ଚାଲିଯାଆନ୍ତି ।

ମଣିଷଖିଆ କୁମ୍ଭୀର ଭାରତବର୍ଷଠାରୁ ଆରମ୍ଭ କରି ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ଦେଖିବାକୁ ମିଳେ । ଏହାର ଲମ୍ବ 6 ମିଟର ପର୍ଯ୍ୟନ୍ତ ହୁଏ । ଏହା ଅତ୍ୟନ୍ତ ଭୟଙ୍କର ହୋଇଥାଏ । ଅଣ୍ଡା ଦେବା ସମୟରେ ଏହା ଏପରି ଭୟଙ୍କର ହୋଇଯାଏ ଯେ ଛୋଟ ଛୋଟ ନୌକାକୁ ଆକ୍ରମଣ କରି ସେଥିରେ ବସିଥିବା ଲୋକମାନଙ୍କୁ ମଧ୍ୟ ଖାଇଯାଏ । ଏହାକୁ

ଧରିବା ପାଇଁ ବହୁତ ପ୍ରକାରର କୌଶଳ କରାଯାଏ । ମି: ଲେଓ୍ୱାର୍ଡ ଏପରି ଏକ କୌଶଳର ବର୍ଣ୍ଣନା କରିଛନ୍ତି । ଏକଦା ଜଣେ ଶିକାରୀ ତାର ପୁଅକୁ ସାଙ୍ଗରେ ନେଇ ଯେଉଁ ସ୍ଥାନରେ ଗୋଟିଏ ମଗର ଗୋଟିଏ ମଣିଷକୁ ମାରିଥିଲା ସେହି ସ୍ଥାନକୁ ଗଲା । କିଛି ସମୟ ପରେ ସେମାନେ ମଗରକୁ ପାଣିରେ ପହଁରିବାର ଦେଖିଲେ । ତାଙ୍କ ପୁଅ ଶୀଘ୍ର ପାଣିକୁ ଡେଇଁ ପଡ଼ିଲା ଏବଂ ହାତରେ ପାଣି ନେଇ ଥପ୍ ଥପ୍ କରିବାକୁ ଆରମ୍ଭ କଲା ଯେମିତି ସେହି ମଣିଷଖିଆ କୁମ୍ଭୀର ତା' ପାଖକୁ ଆସିଯିବ । କୁମ୍ଭୀର ପାଣିରେ ବୁଡ଼ିଯାଇ ସେହି ଶିକାରୀର ପୁଅ ଥିବା ସ୍ଥାନରେ ଉଠିଲା । ଇତିମଧ୍ୟରେ ଶିକାରୀର ପୁଅ ନୌକା ଉପରକୁ ଚଢ଼ି ଯାଇଥିଲା । କୁମ୍ଭୀର ଆଗକୁ ଆସିବାମାତ୍ରେ ସେ ତାକୁ ଉଦ୍ଦେଶ୍ୟ କରି ବର୍ଚ୍ଛା ନିକ୍ଷେପ କଲା ଏବଂ କୁମ୍ଭୀର ବର୍ଚ୍ଛାଘାତରେ ମରି ସେଇଠି ଭାସିବାକୁ ଲାଗିଲା ।

କେତେକ କୁମ୍ଭୀର କାଦୁଅ ସ୍ଥାନରେ ରହନ୍ତି । ଏମାନେ ଭାରତବର୍ଷ ଓ ଶ୍ରୀଲଙ୍କାର ନଦୀମାନଙ୍କରେ ଦେଖିବାକୁ ମିଳନ୍ତି । କେବେ କେବେ ମାଳୟର ପ୍ରଦେଶରେ ବି ଏମାନଙ୍କୁ ଦେଖିବାକୁ ମିଳେ । ଏହି କୁମ୍ଭୀର 3.5 ମିଟରରୁ ଅଧିକ ଲମ୍ବା ହୁଏ ନାହିଁ । ଏମାନେ ବହୁତ ଉଗ୍ରାତ୍ମ । ଏମାନେ ଖୁବ୍ ଶୀଘ୍ର ପୋଷା ମାନିଯାଆନ୍ତି ଏବଂ ମଣିଷ ହାତରୁ ଖାଦ୍ୟ ଖାଆନ୍ତି । ଗ୍ରୀଷ୍ମ କାଳରେ ଯେତେବେଳେ ପାଣି ଶୁଖିଯାଏ, ସେତେବେଳେ ଏମାନେ ଭୂମିରେ ବାହାରି ହୋଇ ନଦୀ, ପୋଖରୀ ଇତ୍ୟାଦିର ସନ୍ଧାନ କରନ୍ତି । କେବେ କେବେ ନଦୀ ଓ ପୋଖରୀ ଶୁଖିଗଲେ ଏମାନେ ପଙ୍କ ଭିତରକୁ ପଶି ଯାଆନ୍ତି ଏବଂ ବର୍ଷା ଦିନରେ ପୁଣି ବାହାରି ଆସନ୍ତି ।

ଗଙ୍ଗା, ସିନ୍ଧୁ ତଥା ବ୍ରହ୍ମପୁତ୍ର ନଦୀରେ ଖୁବ୍ ବଡ଼ ଘଡ଼ିଆଳ କୁମ୍ଭୀର ଦେଖିବାକୁ ମିଳେ । ଏହାର ଲମ୍ବା ନ'ମିଟରରୁ ଅଧିକ ଅଟେ । ଏହାର ମୁହଁ ଲମ୍ବା ଏବଂ ମୁହଁ ତଳର ଗୋଜିଆ ଅଂଶରେ ୱ୦ ଅଛି । ଯେଉଁ ସବୁ ଘଡ଼ିଆଳ ମାଛ ଖାଆନ୍ତି ସେମାନେ ସାଧାରଣତଃ ମଣିଷକୁ ଖାଆନ୍ତି ନାହିଁ କି ଆକ୍ରମଣ ମଧ୍ୟ କରନ୍ତି ନାହିଁ । ତଥାପି ବେଳେ ବେଳେ ଘଡ଼ିଆଳଙ୍କ ପେଟ ଭିତରୁ ମଣିଷର ହାଡ଼ ମିଳିଥାଏ । ସେଥିରୁ ଜଣାଯାଏ ଯେ ସେ ମଣିଷକୁ ବି ଖାଏ । ସ୍ତ୍ରୀ-ଘଡ଼ିଆଳ ଚାଳିଶିଟି ଅଣ୍ଡା ଦିଏ ଏବଂ ବାଲିରେ ଗାତ କରି ସେଥିରେ ଅଣ୍ଡାଗୁଡ଼ିକ ପୋତି ରଖେ । ଅନ୍ୟ ଦୁଇ ଜାତି କୁମ୍ଭୀର ମଧ୍ୟରୁ ଗୋଟିଏ ଆମେରିକା ଯୁକ୍ତରାଷ୍ଟ୍ରର ଦକ୍ଷିଣ ପଶ୍ଚିମ ଭାଗରେ ଦେଖାଯାଏ ଓ ଅନ୍ୟ ଜାତି ଚୀନର ୟାଂସିକିୟାଂ ନଦୀରେ ଦେଖିବାକୁ ମିଳେ ।

ଚିତ୍ର—4 ପଶ୍ଚିମ ଆଫ୍ରିକାର କୁମ୍ଭୀର

ସର୍ବ ପ୍ରଥମେ 1870 ମସିହାରେ ଜୀବଜନ୍ତୁମାନଙ୍କ ସଂଗ୍ରହାଳୟରେ ଏହି ଚୀନା କୁମ୍ଭୀରକୁ ପ୍ରଦର୍ଶନ କରାଯାଇଥିଲା । ଆମେରିକାର କୁମ୍ଭୀର ଏବେ ମଧ୍ୟ କେତେକ

ସ୍ଥାନରେ ବହୁ ସଂଖ୍ୟାରେ ଦେଖିବାକୁ ମିଳେ । କିନ୍ତୁ କେତେକ ସ୍ଥାନରେ ଶିକାର ହେତୁ ସେମାନଙ୍କର ବିନାଶ ହୋଇଛି । ତା'ର ଚମଡ଼ା ପାଇଁ ତାକୁ ଶିକାର କରାଯାଏ । ଏହାର ଚମଡ଼ାରେ ଅନେକ ବସ୍ତୁ ଯଥା ସୁଟକେଶ, ବାକ୍ସ ଆଦି ତିଆରି କରାଯାଏ । ଏକା ନିଉଅର୍ଲିଅନସ ସହରରୁ 10,000 କୁମ୍ଭୀର ଛାଲ ବିଦେଶକୁ ପଠା ଯାଇଥିଲା । ଏହି ଜାତିର କୁମ୍ଭୀର 4.5 ମିଟର ପର୍ଯ୍ୟନ୍ତ ଲମ୍ବା ହୁଏ ।

ନିଉୟର୍କର ଚିଡ଼ିଆଖାନାରେ ଥରେ ଗୋଟିଏ କୁମ୍ଭୀର ଛୁଆକୁ ଅଣାଯାଇଥିଲା । ସେତେବେଳେ ତାର ଲମ୍ବ 20 ସେ.ମି. ଏବଂ ଓଜନ 300 ଗ୍ରାମ ଥିଲା । ପ୍ରଥମ ବର୍ଷରେ ସେ 75 ସେ.ମି. ଲମ୍ବା ହେଲା ଏବଂ ଦେଢ଼ କିଲୋଗ୍ରାମରୁ ବେଶୀ ଭାରି । ଦ୍ୱିତୀୟ ବର୍ଷରେ ସେ 90 ସେ.ମିରୁ ବେଶୀ ଲମ୍ବା ଏବଂ 6.5 କି.ଗ୍ରା. ଭାରି ହୋଇଥିଲା । ତୃତୀୟ ବର୍ଷ ତାର ଲମ୍ବ 1.40 ମିଟର ହେଲା ଏବଂ ଓଜନ 25 କି.ଗ୍ରାମ । ଏହି ପ୍ରକାର ଚାରି ବର୍ଷ ପରେ ସେ ପ୍ରାୟ ଲମ୍ବା 3 ମିଟର ଏବଂ 80 କି. ଗ୍ରା ଓଜନ ହୋଇଗଲା ।

ଆମେରିକାର କୁମ୍ଭୀର ମଧ୍ୟ ବସନ୍ତ ଋତୁରେ 30 ବା 40 ଅଣ୍ଡା ଦିଏ । ସ୍ତ୍ରୀ-କୁମ୍ଭୀର ସେହି ଅଣ୍ଡାକୁ ଘାସପତ୍ର ଦେଇ ତିଆରି ହୋଇଥିବା ବସାରେ ରଖିଦିଏ ଏବଂ ଚତୁର୍ଦ୍ଦିଗରୁ ପତ୍ରପତ୍ର ଓ ସରୁ ସରୁ କାଠି ଦେଇ ଆବୃତ କରି ରଖେ । ଏହି ପ୍ରକାର ବସା ବେଶି ଗରମ ରହେ । ଦୁଇ ମାସ ପରେ ଏଥିରୁ ଶାବକମାନେ ବାହାରି ଆସନ୍ତି ।

### ଚିତ୍ର—5 ଲୁଣିଆ ପାଣିର କୁମ୍ଭୀର .

ଚୀନା ଘଡ଼ିଆଳ କେବଳ ଦୁଇ ମିଟର ଲମ୍ବା ହୁଏ । ଆମେରିକାର କୁମ୍ଭୀର ଠାରୁ ଏହା ଭିନ୍ନ ପ୍ରକାରର ଅଟେ । ଦକ୍ଷିଣ ଓ ମଧ୍ୟଆମେରିକାରେ ବି କେତେକ କୁମ୍ଭୀର ଦେଖିବାକୁ ମିଳନ୍ତି କିନ୍ତୁ ଏମାନେ ଉପରୋକ୍ତ ଜାତିଠାରୁ ବହୁତ ଭିନ୍ନ ଅଟନ୍ତି । ଏହି ଜାତିର କଳା କୁମ୍ଭୀର ବିଶାଳ ଆକୃତିର ହୁଅନ୍ତି ଯାହାର ଲମ୍ବା ଛ' ମିଟର ହୁଏ । ମି. ବେଟ ଆମେରିକାର ନଦୀ କୂଳରେ ବୁଲୁଥିବା ସମୟରେ ଦୁଇଟି କୁମ୍ଭୀରକୁ ଦେଖୁଥିଲେ । ସେମାନେ ଚୁପ୍‌ଚାପ ଘାଟ ପାଖରେ ଶୋଇ ଚାରି ଦିଗକୁ ଦେଖୁଥାନ୍ତି । ଯଦି କୁକୁର, ମେଣ୍ଢା, ଘୁଷୁରି କିମ୍ବା ମଣିଷ ଆସିବ ତାକୁ ଧରି ସାଙ୍ଗେ ସାଙ୍ଗେ ପାଣି ଭିତରକୁ ଚାଲିଯା'ନ୍ତି । ତେଣୁ ଲୋକମାନେ ଖୁବ୍ ସାବଧାନତା ସହ ସେଠାରେ ଗାଧୋଇଥାନ୍ତି । ଏହାର ଚାହାଣି ସବଦା ଚଞ୍ଚଳ ଥାଏ । ଏହି କୁମ୍ଭୀରର ମୁଣ୍ଡ ଓ ଆଖି ପାଣି ଉପରକୁ ଉଠିଥାଏ । ଆଶ୍ଚର୍ଯ୍ୟର କଥା ଯେ ଏହି ଜାତିର ଗୋଟିଏ କୁମ୍ଭୀର ଆଖି ଚାରି ପାଖରେ ଚଷମା ପରି ଚିହ୍ନ ରହିଛି । ସେଥିପାଇଁ ଏହାର ନାମ 'ଚଷମା କୁମ୍ଭୀର' ହୋଇଛି । ଏହାର ଲମ୍ବ ବହୁତ କମ୍ । କେବଳ ଦେଢ଼ ମିଟର ଲମ୍ବା ହୁଏ ।

# କଇଁଛ

ଆମ୍ଭେ ସମସ୍ତେ କଇଁଛ ଦେଖିଛୁ । ଧାର୍ମିକ ପ୍ରକୃତିର ଲୋକେ ନଦୀକୂଳକୁ ଯାଇ କଇଁଛକୁ ଅଟାର ଗୁଳା କରି ଖୁଆନ୍ତି । ତାର ବାହ୍ୟ ଆକୃତି ଦେଖିଲେ ମନେ ହୁଏ ଯେ କୁମ୍ଭୀର ଓ ସରୀସୃପ ଠାରୁ ଏହା ଭିନ୍ନ । କିନ୍ତୁ ବିଶାଳ ସରୀସୃପ ଜଗତର ଏ ବି ଏକ ସଦସ୍ୟ । ତାର ଦେହର ବାହ୍ୟ ଆବରଣ ଏକ କଠିନ ଚମଡ଼ାରେ ଆବୃତ । ଏହା ଭିତରେ ସେ ତାର ହାତ, ଗୋଡ଼ ଓ ମୁହଁକୁ ସଙ୍କୁଚିତ କରି ରଖିଥାଏ । ଭାରତର ଅଧିକାଂଶ ଦାର୍ଶନିକ ମନୁଷ୍ୟର ଶରୀର ଓ ଆତ୍ମାକୁ କଚ୍ଛପର ବାହ୍ୟ ଆବରଣ ଓ ଶରୀର ସହିତ ତୁଳନା କରିଛନ୍ତି । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଦେଇଥିଲେ ଯେ ଯେପରି କଇଁଛ ନିଜ ଦେହକୁ ତାହାର ଖୋଲପା ଭିତରେ ସଙ୍କୁଚିତ କରି ନିଏ ସେହିପରି ମନୁଷ୍ୟ ତାର ଇନ୍ଦ୍ରିୟକୁ ନିଜ ଆୟତ୍ତରେ ରଖିବା ଉଚିତ ।

## ସ୍ଥଳଚର କଇଁଛ :—

କଚ୍ଛପର କଠିନ ବାହ୍ୟ ଆବରଣର ବିକାଶ ସମ୍ବନ୍ଧରେ ବୈଜ୍ଞାନିକମାନେ ଲେଖିଛନ୍ତି ଯେ ପୂର୍ବେ ଏହି ଜୀବର ଦେହ ଟାଣ ଆବରଣରେ ଆବୃତ ହୋଇଥିଲା । ଏହା ତଳେ ମୋଟା ମାଂସର ଏକ ସ୍ତର ଥିଲା । ଏହି ମାଂସ ସ୍ତର ମଧ୍ୟରେ ଛୋଟ ଛୋଟ ହାଡ଼ କ୍ରମଶଃ ବୃଦ୍ଧିହୋଇ ପରସ୍ପର ସହିତ ମିଶି ଯାଇଥିଲେ । ଏସବୁ ମିଶିଯିବା ପରେ ଏକ କଠିନ ହାଡ଼ର ଆବରଣ ହୋଇଗଲା । ମାଂସର ସ୍ତରଟି ଧୀରେ ଧୀରେ ପେଟ ମଧ୍ୟକୁ ଚାଲିଗଲା । ପେଟର ଅବଶିଷ୍ଟ ହାଡ଼ ସବୁ ଭିତରେ ଭିତରେ ବଢ଼ିବାକୁ ଲାଗିଲା ଓ ଶେଷରେ ମେରୁଦଣ୍ଡର ହାଡ଼ ସହିତ ମିଶିଗଲା । କାଳକ୍ରମେ ମେରୁଦଣ୍ଡ ଉପରର ଟାଣ ଆବରଣ ସହିତ ଯୋଡିଗଲା ଏବଂ ପେଟର ହାଡ଼ ସବୁ ଛାତିର ହାଡ଼ ସହିତ ମିଶିଗଲା । ଏହାର ପ୍ରମାଣ ଆମେ ଏହାର ଶରୀର ଗଠନରୁ ଜାଣିପାରୁ ।

ଚିତ୍ର—୧ କାଦୁଅରେ ଥିବା କଇଁଛ

କଇଁଛ ମୋଟେ ଚଞ୍ଚଳ ନୁହେଁ । କଇଁଛର ଖୋଲପା ଚଲାବୁଲାରେ ବାଧା ଦିଏ । ଏହାର ଭିତରେହିଁ ସେ ତାର ହାତ ଗୋଡ଼କୁ ସଞ୍ଚାଳିତ କରେ । ଏହି କାରଣରୁ ସେ କିଛି ଦୂର ପର୍ଯ୍ୟନ୍ତ କେବଳ ଧୀରେ ଧୀରେ ଚାଲିଯାଇ ପାରେ । ବେକ ଓ ଲାଞ୍ଜକୁ ଛାଡ଼ି ମେରୁଦଣ୍ଡର କୌଣସି ଅଂଶକୁ ହଲଚଲ କରି ପାରେନାହିଁ । କଇଁଛର ଆଖି ବଡ ଅଟେ ଏବଂ ତା'ଉପରେ ଏକ ପତଳା ପରଦା ରହିଥାଏ । ଅଧିକାଂଶ କଇଁଛ ତାହାର ହାତ, ଗୋଡ଼, ମୁହଁ ଓ ଲାଞ୍ଜକୁ ଖୋଲପା ଭିତରେ ଟାଣିନିଅନ୍ତି । କେତେକ

ପୁଣି ଏପରି ଅଛନ୍ତି ଯେଉଁମାନଙ୍କର ମୁଣ୍ଡ ଉପରେ ହାଡ଼ର ଏକ ଖଣ୍ଡ ଥାଏ, ଯାହା ମୁହଁକୁ ଟାଣି ନେଲା ପରେ ସମ୍ମୁଖରେ ଥିବା କଣାକୁ ବନ୍ଦ କରିଦିଏ । ଏପରି କଇଁଛକୁ ଦୂରରୁ ଦେଖିଲେ ଏକ ବନ୍ଦ ଡବାପରି ମନେହୁଏ ।

କଇଁଛ ବିଚିତ୍ର ଭଙ୍ଗୀରେ ଶ୍ୱାସ ନିଏ । ଅନ୍ୟ ଜୀବଙ୍କ ପରି ଏହାର ମେରୁଦଣ୍ଡ ହଲଚଲ ହୋଇପାରେ ନାହିଁ । ଏକ ସ୍ଥାନରେ ସ୍ଥିର ହୋଇ ରହିଥାଏ ଏବଂ ଆମପରି ତାର ହାଡ଼ ସବୁ ପ୍ରସାରିତ କିମ୍ବା ସଙ୍କୁଚିତ ହୋଇପାରେ ନାହିଁ । ସେ ତାର ନାକ ବାଟେ ପବନ ନେଇ ପାଟିରେ ଭର୍ତ୍ତିକରି ରଖେ ଏବଂ ତା'ପରେ ଧୀରେ ଧୀରେ ଜିଭକୁ ଉପରକୁ ଉଠାଇ ନାକର କଣା ପାଖରେ ଅଟକାଇ ରଖେ । ଏପରି କରିବା ଦ୍ୱାରା ମୁହଁରେ ଥିବା ପବନ ଶ୍ୱାସନଳୀ ଦେଇ ଫୁସ୍‌ଫୁସ୍‌କୁ ଚାଲିଯାଏ । ଏହାପରେ ସେ ଜିଭକୁ ପୁଣି ତଳକୁ ଟାଣିନିଏ । ଯଦି କୌଣସି କଇଁଛର ନାକରେ ମହମ ଲଗାଇ ଦିଆଯାଏ ତେବେ ତାର ଶ୍ୱାସରୁଦ୍ଧ ହୋଇଯିବ ଏବଂ ଶେଷକୁ ସେ ମରି ମଧ୍ୟ ଯିବ । କଇଁଛର ଏକ ଅସାଧାରଣ ବିଶେଷତ୍ୱ ହେଲା ସେ ସେ ବିନା ଖାଦ୍ୟରେ ଅନେକ ମାସ ପର୍ଯ୍ୟନ୍ତ ଜୀବିତ ରହିପାରେ । ଯଦି ତାର ମସ୍ତିଷ୍କକୁ ଅଲଗା କରି ଦିଆଯାଏ ତଥାପି ସେ ଚାଲିବୁଲି କରିପାରେ । ଏପରିକି ହୃତ୍‌ପିଣ୍ଡ ଛଡ଼ା ଦେହର ଆଉ ସବୁ ଅଂଶକୁ ବାହାର କରିଦେଲା ପରେ ମଧ୍ୟ ତାହାର ହୃତ୍‌ପିଣ୍ଡ ଅନେକଦିନ ପର୍ଯ୍ୟନ୍ତ କମ୍ପିତ ହେଉଥାଏ ।

ଚିତ୍ର—2 ପୋଖରୀରେ ବାସ କରୁଥିବା କଇଁଛ

ଶୀତୋଷ୍ଣପ୍ରଦେଶର କଇଁଛମାନେ ଶୀତ ଦିନରେ ମାଟି ଭିତରେ ପଶିଯାଆନ୍ତି ଓ କିଛି ନଖାଇ ନପିଇ ପଡ଼ି ରହିଥାନ୍ତି ।

ସ୍ଥଳଭାଗର କଇଁଛ ଶାକାହାରୀ ଓ ପାଣିର କଇଁଛ ମାଂସାହାରୀ ଅଟେ । ସ୍ଥଳଚର କଇଁଛ କୋବିପତ୍ରକୁ ଖୁବ୍ ଆନନ୍ଦରେ ସହ ଖାଏ । ଶାଗ ଇତ୍ୟାଦି ବି ସେ ଖାଏ ଯଦି ଏହାକୁ ବଗିଚାରେ ଛାଡ଼ି ଦିଆଯାଏ ତେବେ ସେ ଯାହାପାଏ ତାକୁ ଖାଇଯାଏ । ଏପରିକି ବଗିଚାରେ ଲଗାଯାଇଥିବା ଭଲ ଭଲ ଫୁଲ ଗଛର ଚେରକୁ ବି ଖାଇ ଦିଏ । ଅଧିକାଂଶ ଲୋକଙ୍କର ମତରେ କଇଁଛ ଏକ ମୂର୍ଖ ଜୀବ ଅଟେ । କିନ୍ତୁ ପ୍ରକୃତରେ ଏହା ଠିକ୍ ନୁହେଁ । ଏହାକୁ ପାଳନ କଲେ ସେ ଆପଣଙ୍କ ହାତରୁ ନିଜେ ଆସି ଖାଇଯିବ । ସେ ତାର ପ୍ରଭୁ କିଏ ଜାଣିପାରେ । ବଗିଚାରେ ସେ ନିଜର ରହିବା ସ୍ଥାନକୁ ଖୋଜି ନେଇପାରେ ଓ ପ୍ରତ୍ୟେକ ଦିନ ବୁଲିବୁଲି କରି ତାର ନିର୍ଦ୍ଦିଷ୍ଟ ସ୍ଥାନକୁ ଫେରିଆସେ । ଗୋଟିଏ ନିର୍ଦ୍ଦିଷ୍ଟ ପଥରେ ସେ ସର୍ବଦା ଚାଲୁଥାଏ । ଏଥିରୁ ଜଣାଯାଏ ଯେ ତାର ସ୍ଥାନ ଓ ଦିଗ ବିଷୟରେ ବେଶ୍ ଭଲ ଜ୍ଞାନଅଛି ।

ହେରିଜ ସାହେବ ଏକଦା ତାଙ୍କ ବଗିଚାରେ ଗୋଟିଏ କଇଁଛ ପାଳନ କରିଥିଲେ । ତାର ଏକ ଖରାପ ଅଭ୍ୟାସ ଥିଲା ଯେ ସେ ପ୍ରତିଦିନ ସୂର୍ଯ୍ୟମୁଖୀ ଫୁଲଗଛର

ମଝିରେ ଯାଇ ବସୁଥିଲା ଏବଂ ତହାର ଗଛର ଡ଼ାଳ ସଙ୍ଗି ପଡ଼ୁଥିଲା । ଦେଶଜ ସାହେବ ତାକୁ ବାରମ୍ବାର ଉଠାଇ ନେଇ ଗୋଟିଏ କୋଣରେ ରଖି ଦେଉଥିଲେ ମଧ୍ୟ ସେ ବାରମ୍ବାର ସେଠାକୁ ଫେରି ଆସୁଥିଲା । ଏଥିରୁ ଜଣା ପଡ଼ୁଛି ଯେ କଇଁଛର ସ୍ମରଣଶକ୍ତି ସାଧାରଣ ନୁହେଁ । ସ୍ଥଳଚର କଇଁଛର ତିନି ଜାତି ଇଉରୋପରେ ଦେଖିବାକୁ ମିଳେ । ସେମାନଙ୍କ ନାମ—ଆଲଜେରିଆନ, ଗ୍ରୀସିଆନ ଓ ମାରଜିନ୍ । ଆଲଜେରିଆନ କଇଁଛକୁ ପ୍ରାୟ ସବୁ ଲୋକ ଜାଣନ୍ତି କାରଣ ଏହା ପଦାରେ ଯିବା ଆସିବା କରେ । ଏହା 22½ ସେ. ମି.ରୁ ଅଧିକ ଲମ୍ବା ହୁଏ ନାହିଁ ଏବଂ ଏହାର ଜଂଘ ଉପରେ ଏକ ତିନକୋଣିଆ କଳାପରି ବାହାରି ଥାଏ ଯେଉଁଥିରୁ ସେ ଅନ୍ୟ ଜାତିଠାରୁ ଭିନ୍ନ ଜଣାପଡ଼େ । ଏମାନେ ଇଉରୋପର ସବୁ ଦେଶରେ ମିଳନ୍ତି । ଏହା ଏସିଆ ତଥା ଆଫ୍ରିକାରେ ମଧ୍ୟ ଦେଖାଯାଏ । ଏହାର ଆୟୁ ବହୁତ ବେଶୀ । ଲୋକମାନେ କହନ୍ତି ଯେ ଇଂଲଣ୍ଡରେ ଏହି ଜାତିର ଏକ କଇଁଛ ୨୦ ବର୍ଷ ବଞ୍ଚି ରହିଥିଲା ।

କୁମାରୀ ଡ଼. ଜେନ୍‌କିନସ ସେହି କଇଁଛ ବିଷୟରେ ବର୍ଣ୍ଣନା କରି କହିଛନ୍ତି ଯେ, ମୋର କକାଙ୍କ ବୟସ ଏବେ ନବେ ବର୍ଷ ଏବଂ ତାଙ୍କ କହିବା ଅନୁସାରେ ଯେତେବେଳେ ସେ ଛୋଟ ଥିଲେ ସେତେବେଳେ ଏହି କଇଁଛ ଥିଲା ଏବଂ ସେ ସମୟରେ ମଧ୍ୟ ତାହାର ଆକାର ବର୍ତ୍ତମାନ ପରି ଥିଲା । ଅକ୍ଟୋବର ମାସରେ ସେ ମାଟି ଭିତରକୁ ପଶିଯାଏ ଏବଂ ମାର୍ଚ୍ଚ ମାସରେ ବାହାରି ଆସେ । ବାହାରି ଆସିବାବେଳେ ତାର ଜିଭ କଳା ଦେଖାଯାଏ । ତିନି ଚାରି ସପ୍ତାହ ପରେ ଜିଭର ରଙ୍ଗ ନାଲି ହୋଇ ଯିବା ପରେ ସେ ଖାଇବାକୁ ଆରମ୍ଭ କରେ । ସେ ଛୋଟ ଛୋଟ ଘାସଗଛ ଖାଏ । କେବେ କେବେ ମଟର, କୋବି, ରସଯୁକ୍ତ ତଥା ଶାଗ ଗୁଡ଼ିକୁ ବି ଆନନ୍ଦର ସହିତ ଖାଇଦିଏ । ସେ ପାଦରେ ଭର ଦେଇ ଚାଲେ । ଝରକାରେ ଏହା ବହୁତ ଖୁସିଥିଲା ପରି ଜଣାପଡ଼େ । ସେ ମାଳୀକୁ ପଶ୍ଚାତରୁ ଅନୁସରଣ କରି ତାକୁ ହଇରାଣ କରିଦିଏ ଏବଂ ତାର ଜାମା ଓ ପାଦକୁ କାମୁଡ଼ି ଦେଇଥାଏ । ମାଳୀ ତାର କାମ ଠିକ୍ ଭାବରେ କରି ନପାରି ତାକୁ ଘରେ ବନ୍ଦ କରି ରଖିଦିଏ । ଏହି କଇଁଛକୁ ଜଣେ ନାଉରୀ ୱେଷ୍ଟ ଇଣ୍ଡିଜରୁ ଆଣିଥିଲା ।

ଚିତ୍ର—୩ ଆଲଜେରିଆନ କଇଁଛ

ଗ୍ରୀସିଆନ କିମ୍ବା ଗ୍ରୀସଦେଶୀୟ କଇଁଛ ଆଲଜେରିଆନ କଇଁଛ ପରି କିନ୍ତୁ ଏହାର ଜଂଘରେ କଳା ନାହିଁ । ଗ୍ରୀସରେ ଲୋକମାନେ ଏହାକୁ ଖାଆନ୍ତି । ତାର ମସ୍ତିଷ୍କ ତଥା ମାଂସକୁ ନିଆଁରେ ସେକି ଖାଇବାକୁ ଲୋକେ ପସନ୍ଦ କରନ୍ତି । ଏହି ମାଂସ ରାନ୍ଧିବା ପାଇଁ ବେଶ ଦକ୍ଷତା ଓ କୌଶଳ ଆବଶ୍ୟକ । ସାବଧାନତା ସହ ତାକୁ କାଟିବାକୁ ପଡ଼େ କାରଣ କଇଁଛ ତାର ମୁଣ୍ଡକୁ ଖୁବ୍ ଶୀଘ୍ର ତାର ଖୋଳ ଭିତରକୁ ଟାଣିନିଏ । ଦକ୍ଷ ଲୋକମାନେ ଜାଣନ୍ତି ଯେ ତାର ଲାଞ୍ଜକୁ ହଲେଇଲେ କଇଁଛ ତାର ବେକକୁ ବାହାର କରିଦିଏ ଏବଂ ତା'ପରେ ସେମାନେ ଏକ ଧାରୁଆ ଛୁରୀ ନେଇ

ତାଙ୍କୁ କାଟି ଦିଅନ୍ତି । ଫ୍ରାନସର ସୈନ୍ୟମାନେ ଅତ୍ୟନ୍ତ ନିଷ୍ଠୁରତାର ସହିତ ଏହି କାମ କରିପାରନ୍ତି । ସେମାନେ ଜଳନ୍ତା କୋଇଲା ଖଣ୍ଡକୁ ତା' ମୁଣ୍ଡ ଉପରେ ରଖିଦିଅନ୍ତି ଯାହାଫଳରେ ସେ ତାର ମୁଣ୍ଡକୁ ବାହାରକୁ କାଢ଼ିନେବାକୁ ବାଧ୍ୟ ହୁଏ ।

କଇଁଛ ତାର ସାଥୀ ବିନା ରହିପାରେ ନାହିଁ । ଏକୁଟିଆ ଥିବାବେଳେ ବସନ୍ତ ଋତୁ ଆସିଲେ ସେ ବିଚଳିତ ହୋଇପଡ଼େ ଏବଂ ସାଥୀ ଖୋଜିବା ପାଇଁ ବାହାରକୁ ଚାଲିଯାଏ ।

କଇଁଛର ପୃଷ୍ଠର ଗଠନ ଦେଖି ସେ ପୁରୁଷ କି ସ୍ତ୍ରୀ ତାହା ଜାଣିହୁଏ । ପୁରୁଷ କଇଁଛର ପୃଷ୍ଠ ଗଠନ ଅର୍ଦ୍ଧଚନ୍ଦ୍ରାକାର ଏବଂ ସ୍ତ୍ରୀ କଇଁଛର ପୃଷ୍ଠର ଗଠନ ଚେପ୍ଟା ।

### ଚିତ୍ର—4 ଚେନ୍ଦ୍ରୁଆନୁମା କଚ୍ଛପ

ମାରଜଲନ୍ତ କଇଁଛ ଗ୍ରୀସ ତଥା ସିଡ଼ନିଆ ପ୍ରଦେଶରେ ଦେଖିବାକୁ ମିଳେ । ଏହାକୁ ଜାଣିବାର ଉପାୟ ହେଲା ଯେ ଏହାର ପୃଷ୍ଠଭାଗ ଉପରକୁ ଉଠିଥାଏ । ଆମେରିକାର 'ଡ଼ବା' କଇଁଛ ପାଣିରେ ରହୁଥିବା କଇଁଛ ଓ ସ୍ଥଳଚର କଇଁଛର ମଧ୍ୟବର୍ତ୍ତୀ ଶ୍ରେଣୀର । ଏହାର ପଛ ପାଦରେ ପତଳା ପରଦା ରହିଥାଏ । ଏହା ଶାକାହାରୀ ଅଟେ କିନ୍ତୁ ସମୟେ ସମୟେ ଜିଆ ଓ ବେଙ୍ଗ ଇତ୍ୟାଦି ଖାଇଥାଏ । ଡରକୁ କଲେ ଏହି କଇଁଛ ତାର ହାତ ଓ ପାଦକୁ ଦେହ ଭିତରକୁ ଟାଣିନିଏ ଏବଂ ଗୋଟିଏ ବନ୍ଦ ବାକ୍ସ ପରି ହୋଇଯାଏ । ଏଥିପାଇଁ ଏହାର ନାମ "ବକ୍ସଟର୍ଟସ୍ପେନ୍" ବା ଡବାକଇଁଛ ଦିଆ-ଯାଇଛି । ଏହି ଶ୍ରେଣୀର କଇଁଛ ମଧ୍ୟରୁ 'କରୋଲାଇନ ବକ୍ସ ଟର୍ଟସ୍ପେନ' ଦର୍ଶନୀୟ ଅଟେ । ଏହାର ମୁଣ୍ଡ, ହାତ, ଗୋଡ଼ ତଥା ଖୋଳ ଉପରେ କଳା ଓ ହଳଦିଆ ଗାର ପଡ଼ିଥାଏ । ଏଣୁ ଏହି ଜାତିର ଦୁଇଟି ଜୀବ ଏକପ୍ରକାର ହୁଅନ୍ତିନାହିଁ । ଏହା ଜଙ୍ଗଲରେ ବାସକରେ ଏବଂ କୋଳି, ରସଯୁକ୍ତ ଫଳ, ଗଛର ଚୂଳ, ଜିଆ ତଥା କୀଟ ପତଙ୍ଗଙ୍କୁ ଖାଇ ଜୀବନ ନିର୍ବାହ କରେ । ଡିଟମନ ସାହେବ କହିଛନ୍ତି ଯେ ଯେତେବେଳେ ଏକ ପ୍ରକାର କଳା ଜାମୁକୋଳି ବହୁତ ସଂଖ୍ୟାରେ ଫଳେ ସେତେବେଳେ ଏହି ଜାତୀୟ କଇଁଛର ଆଗ ଦାନ୍ତ ରସରେ ପୂର୍ଣ୍ଣ ହୋଇ ରହିଥାଏ । ଏବେ ସେମାନଙ୍କ ସଂଖ୍ୟା କମି ଯାଇଥିବା ହେତୁ ଆମେରିକା ସରକାର ଆଇନ କରି ଏମାନଙ୍କୁ ଧରିବା ଓ ବାହାରକୁ ପଠାଇବାକୁ ନିଷିଦ୍ଧ କରି ଦେଇଛନ୍ତି ।

ଉତ୍ତର ଆମେରିକାର ଦକ୍ଷିଣ ପୂର୍ବ ଭାଗରେ ଏକ ବିଚିତ୍ର "ଗୋଫର" କଇଁଛ ଦେଖିବାକୁ ମିଳେ । ଏମାନେ ଅଧିକାଂଶ ସମୟ ଗାତ ଭିତରେ ରହିଥାନ୍ତି । ଏହା ନିଜର ପାଦ ସାହାଯ୍ୟରେ ବାଲୁକାମୟ ସ୍ଥାନରେ ଗାତ ଖୋଳିଥାଏ, ଏହି ଗାତ ପ୍ରାୟ ସାଢ଼େ ପାଞ୍ଚମିଟର ଓ ତିନି ମିଟର ଗଭୀର ହୋଇଥାଏ । ଏହି ଗାତରେ ସ୍ତ୍ରୀ କଇଁଛ ଅବଶ୍ୟ ଅଣ୍ଡା ଦିଏ ନାହିଁ । ଅଣ୍ଡା ପାଇଁ ସେ ଆଉ ଏକ ଅଲଗା ଗାତ ଖୋଳିଥାଏ ।

ମି. ଲବରଜ ୧୯୨୦ ମସିହାରେ ଏକ ନୂଆଁ କଇଁଛ ପାଇଥିଲେ । ଏହାକୁ ନରମ ପୃଷ୍ଠଥିବା କଇଁଛ କୁହାଯାଏ । ସେ ଏହିପରି ଦୁଇଟିକୁ ଲଣ୍ଡନର ପଶୁଶାଳାକୁ ପଠାଇଥିଲେ । ଏହା ୨୦ ସେ. ମି. ଲମ୍ବା ଓ ୫ ସେ. ମି. ଉଚ୍ଚ ହୋଇଥାଏ । ଏହାର ପୃଷ୍ଠ ଅତ୍ୟନ୍ତ ନରମ ଅଟେ ଏବଂ ଅଙ୍ଗୁଳରେ ସୁବିଧାରେ ଏହାକୁ ଚାପି ଦିଆଯାଇପାରେ । ସେଥିପାଇଁ ଏମାନେ ପଥର ଫାଙ୍କ ପ୍ରଭୃତି ମଝିରେ ବାସ କରନ୍ତି । ମି. ଲବରଜ ଏହି ପରି ଗୋଟିଏ କଇଁଛକୁ ତା'ର ବାସସ୍ଥାନରୁ ବାହାର କରିନେବାକୁ ଚାହିଁବାରୁ ତାଙ୍କୁ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କାରଣ ଫାଟ ଭିତରେ ସେ ତା'ର ଦେହକୁ ଏପରି ଫୁଲାଇ ଦେଉଥିଲା ଯେ ତାକୁ ବାହାରକୁ ଆଣିବା ସହଜସାଧ୍ୟ ନଥିଲା । ଏମାନେ ଅନ୍ୟ ଜାତିର କଇଁଛ ଠାରୁ ଚଞ୍ଚଳ ଓ ଅତି ଶୀଘ୍ର ମାଟି ଉପରେ ଚଲାବୁଲା କରି ପାରନ୍ତି ।

କେତେକ କଇଁଛ ଦେଖିବାକୁ ଅତି ସୁନ୍ଦର । ସେମାନଙ୍କର ଖୋଳପା ବିଭିନ୍ନ ରଙ୍ଗ ଦ୍ୱାରା ସଜ୍ଜିତ ହୋଇଥାଏ । ଏହି ପ୍ରକାର କଇଁଛ ଭାରତବର୍ଷ ତଥା ଶ୍ରୀଲଙ୍କାରେ ଦେଖିବାକୁ ମିଳେ । ତାର ପିଠି ଟିକେ ଉପରକୁ ଉଠିଥାଏ ଏବଂ ସେଥିରେ ତ୍ରିଭୁଜାକାର ଗାର ପଡ଼ିଥାଏ । ପିଠିର ରଙ୍ଗ କଳା ଓ ଉଠିଥିବା ଅଂଶ ହଳଦିଆ ରଙ୍ଗର ଏବଂ ସେହି ହଳଦିଆ ରଙ୍ଗ ଚାରିଆଡ଼କୁ ମେଳ ହୋଇଥାଏ । ପେଟର ଆବରଣ ଉପରେ ଅନେକ ପ୍ରକାରର ହଳଦିଆ ଗାର ସବୁ ପଡ଼ିଥାଏ । ସ୍ତ୍ରୀ କଇଁଛ ଅଣ୍ଡାକୁ ସୁରକ୍ଷିତ ସ୍ଥାନରେ ରଖେ । ସେ ଏକ ଗାତ ତିଆରି କରେ । ସେଥିରେ ଅଣ୍ଡାକୁ ରଖି ମାଟି ଦେଇ ବନ୍ଦ କରିଦିଏ । ତାହାପରେ ସେ ସେହି ମାଟିକୁ ଏପରି ଭାବରେ ଘୁଷିଦିଏ ଯେପରି ସେଠି କିଛି ଅଛି ବୋଲି ଜଣାପଡ଼ିବ ନାହିଁ । କେତେକ ସୁନ୍ଦର କଇଁଛ ମାଡାଗାସ୍କାର ଦ୍ୱୀପରେ ଦେଖିବାକୁ ମିଳନ୍ତି । ସେମାନଙ୍କର ପିଠି କଳା ଏବଂ ସେଥିରେ ହଳଦିଆ ଚିହ୍ନ ତଥା ଗାର ସବୁ ପଡ଼ିଥାଏ । ଏଠାକାର ଅଧିବାସୀମାନେ ଏହାକୁ ଡରନ୍ତି । ମି. ବୋଲେଂଜର କହନ୍ତି ଯେ ଲୋକମାନେ ଏହାର ସ୍ପର୍ଶକୁ ଅଶୁଭ ବୋଲି ମନେ କରନ୍ତି । ଏଥିପାଇଁ ଏଠିକାର ଅଧିବାସୀମାନେ ଏହି କଇଁଛକୁ କିମ୍ବା ଏହାର ଅଣ୍ଡାକୁ ସ୍ପର୍ଶ କରନ୍ତି ନାହିଁ ।

ଚିତ୍ର—୫ ଚମକଦାର କଇଁଛ

ଜଗତରୁ ଏହି କଇଁଛ ଜାତି କ୍ରମଶଃ ଲୋପ ପାଇ ଯାଉଛନ୍ତି । ଏପରି ଏକ ସମୟ ଥିଲା ଯେତେବେଳେ ଉତ୍ତର ଆମେରିକା, ଭାରତବର୍ଷ ତଥା ଇଙ୍ଗ୍ଲେଣ୍ଡରେ ଏମାନେ ବହୁତ ସଂଖ୍ୟାରେ ମିଳୁଥିଲେ । ବର୍ତ୍ତମାନ ଅଳ୍ପ ସଂଖ୍ୟାରେ ଏମାନେ ଗେଲାପଗୋସ୍ ଦ୍ୱୀପରେ ଦେଖାଯାନ୍ତି । ଏମାନଙ୍କର ସଂଖ୍ୟା ମାତ୍ର ୧୩ । କେତେକ ଚିଡ଼ିଆଖାନାରେ ଏମାନଙ୍କୁ ଦେଖିବାକୁ ମିଳେ । ଭାରତ ମହାସାଗରସ୍ଥ ଦ୍ୱୀପମାନଙ୍କରେ ଗୋଟେ ଦୁଇଟା ଏହି ଜୀବ ଦେଖିବାକୁ ମିଳୁଛି । ଏଥିରୁ ଜଣାପଡ଼ୁଛି ଯେ ନିକଟ ଭବିଷ୍ୟତରେ ଏମାନେ ଶରୀରବିଶେଷରେ ପରିବର୍ତ୍ତନ ହୋଇଯିବେ । ଗେଲାପେଗୋସର କେତେକ

ଦ୍ୱୀପରେ ଏବେ ଏହି ଜୀବର କୌଣସି ଚିହ୍ନ ମଧ୍ୟ ନାହିଁ । ଜୀବିତ କଇଁଛମାନଙ୍କ ମଧ୍ୟରୁ ଏହା ସବୁଠାରୁ ବଡ଼ ଅଟେ । ଏହାର ଲମ୍ବ ପ୍ରାୟ ୧.୭୦ ମିଟର ହୋଇଥାଏ ।

ପ୍ରସିଦ୍ଧ ବୈଜ୍ଞାନିକ ଡାରୱଇନ୍ ତାଙ୍କ ପୁସ୍ତକରେ ଏହି ଜୀବର ବିସ୍ତୃତ ବର୍ଣ୍ଣନା କରିଛନ୍ତି । ସେହି ସମୟରେ ଏହି ଜୀବ ଅଧିକ ଦେଖାଯାଉଥିଲେ ଏବଂ ସେମାନେ ବେଶୀ ସଂଖ୍ୟାରେ ପାହାଡ଼ିଆ ଓ ସନ୍ତସନ୍ତିଆ ସ୍ଥାନରେ ରହୁଥିଲେ । ତାଙ୍କ ମଧ୍ୟରୁ କେତେକ ପୁରୁଷ କଇଁଛ ଏତେ ଭାରି ଥିଲେ ଯେ ସେମାନଙ୍କୁ ଟେକିବା ପାଇଁ ସାତଆଠ ଜଣ ଲୋକ ଆବଶ୍ୟକ ହେଉଥିଲା । ଯେଉଁ ଦ୍ୱୀପରେ ପାଣି ରହୁ ନ ଥିଲା ଏବଂ କୌଣସି ଜୀବ ବା ବୃକ୍ଷ ନ ଥିଲା ସେଇ ପଥୁରିଆ ସ୍ଥାନରେ ଏମାନେ କେବଳ ରସାଳ ନାଗଫେଣୀ ଗଛ ଖାଇ ଜୀବନଧାରଣ କରୁଥିଲେ । ଯେଉଁ କଇଁଛ ଉଚ୍ଚ ସ୍ଥାନରେ ରହୁଥିଲା ସେ ସେଠାକାର ବୃକ୍ଷଗଛର ପତ୍ର ତଥା ଶୁଖିଲା ଘାସ ପ୍ରଭୃତି ଖାଇ ରହୁଥିଲା । ପାଣି ସନ୍ଧାନରେ ସେମାନେ ଦୂର ଦୂରାନ୍ତକୁ ଚାଲି ଯାଉଥିଲେ । ସେମାନଙ୍କ ଚାଲିବା ଦ୍ୱାରା ସେଠାରେ ଏକ ପ୍ରକାର ରାସ୍ତା ତିଆରି ହୋଇ ଯାଉଥିଲା । ଝରଣା ବା କୌଣସି ପାଣିର ସ୍ରୋତ ନିକଟରେ ଏହି ପ୍ରକାର ଅନେକ ଜୀବ ଏକାଠି ହୋଇ ଯାଉଥିଲେ । ଏମାନଙ୍କ ଦଳ ପାଣି ପିଇବା ପାଇଁ ଖୁବ୍ ଜୋରରେ ପାଣି ଆଡ଼କୁ ଆସୁଥିଲେ ଏବଂ ପହଞ୍ଚିଲା ମାତ୍ରେ ମୁଣ୍ଡ ବାହାର କରି ପାଣିରେ ପକାଇ ମନଭରି ପାଣି ପିଉଥିଲେ । ଗୋଟିଏ ଦଳ ପାଣିପିଇ ସାରିବା ପରେ ଧୀରେ ଧୀରେ ଫେରି ଯାଉଥିଲେ । ଡାରଉଇନ ସାହେବ ଲେଖିଛନ୍ତି କି ଏହି ଦୃଶ୍ୟ ଅତ୍ୟନ୍ତ ବିଚିତ୍ର । ପାଣି ସନ୍ଧାନରେ ସେମାନେ ଦିନକୁ ସାଢ଼େ ଛଅ କିଲୋମିଟର ପର୍ଯ୍ୟନ୍ତ ଚାଲି ଯାଉଥିଲେ । ସେଠି ପହଞ୍ଚିବା ପରେ ସେମାନେ ୩।୪ ଦିନ ରହୁଥିଲେ ଏବଂ ପୁଣି ଫେରି ଆସୁଥିଲେ ।

ପୂର୍ବ କାଳରେ ଲୋକମାନେ ଏହାର ମାଂସକୁ ବହୁତ ଖାଉଥିଲେ । ନାବିକମାନେ ଦ୍ୱୀପରେ ଜାହାଜ ଲଗାଇ ସେମାନଙ୍କୁ ସଂଗ୍ରହ କରୁଥିଲେ । କ୍ୟାପଟେନ ମୋରେର ୧୮୨୫ ମସିହାରେ ଲେଖିଛନ୍ତି ଯେ, ଯେଉଁ ସବୁ ଜାହାଜ ବିଦେଶକୁ ଯାଉଥିଲା, ସେଗୁଡ଼ିକରେ ୭୦୦ ରୁ ୯୦୦ ପର୍ଯ୍ୟନ୍ତ ଏହି ବିଶାଳ କଇଁଛ ଖାଦ୍ୟ ଭାବରେ ରଖାଯାଉଥିଲା । ଏଥିପାଇଁ ଏମାନେ ଧୀରେ ଧୀରେ ଲୋପ ପାଇଗଲେ ।

ଚିତ୍ର—୭ ତାରା ସଦୃଶ କଇଁଛ

ଏହି ଫାଣ୍ଡଇନ କଇଁଛ ଅନ୍ୟ ଏକ ବିରାଟ କଇଁଛ, ଯାହାର କେତେକ ଜାତି ଏବେ ବି ଦେଖିବାକୁ ମିଳୁଛି । ଏହା ଭାରତ ମହାସାଗରୀୟ ଦ୍ୱୀପମାନଙ୍କରେ ଦେଖିବାକୁ ମିଳେ । ଏହି ଦ୍ୱୀପ ସମୂହରେ ସରକାର ପକ୍ଷରୁ ଏମାନଙ୍କୁ ମାରିବା ନିଷେଧ କରାଯାଇଛି । ଏହା ଏତେ ବଡ଼ ଯେ ଏହା ଉପରେ ଗୋଟିଏ ବାଳକ ଚଢ଼ି ବସି ପାରିବ ।

# ଜଳଚର କଇଁଛ

ଜଳରେ ରହିବା କଇଁଛ ବହୁତ ସଂଖ୍ୟାରେ ଦେଖିବାକୁ ମିଳନ୍ତି । ସେମାନଙ୍କ ମଧ୍ୟରୁ କେତେକ ସର୍ବଦା ପାଣିରେ ଥାଆନ୍ତି, କେତେକ ଜଳ ସ୍ଥଳ ଉଭୟ ସ୍ଥାନରେ ରହନ୍ତି ଓ ଆଉ କେତେକ କେବଳ ସମୁଦ୍ରରେ ରହନ୍ତି । ଇଉରୋପର ସ୍ୱଚ୍ଛ ଜଳରେ ରହୁଥିବା କଇଁଛ ଜଳ ଓ ସ୍ଥଳ ଉଭୟରେ ରହନ୍ତି । ଏହି କଇଁଛ ବିଦେଶକୁ ମଧ୍ୟ ପଠାଯାଏ । ଏହା ଉତ୍ତର ତଥା ମଧ୍ୟ ଇଉରୋପ, ଏସିଆ ମାଇନର ଓ ଉତ୍ତର ଆଫ୍ରିକାରେ ବହୁତ ସଂଖ୍ୟାରେ ମିଳେ । ତାର ପିଠି ଚଉଡ଼ା ଓ ସମତଳ ଅଟେ । ତାର ଲାଞ୍ଜ ଲମ୍ବା ଓ ହାତ ଗୋଡ଼ ପତଳା ହୋଇଥାଏ । ପାଦରେ ଚମଡ଼ାର ପତଳା ପରଦା ଥାଏ ଓ ପଞ୍ଝା ତୀକ୍ଷ୍ଣ ଅଟେ । ଏହାର ଲମ୍ବ ୧୫ ସେଣ୍ଟିମିଟର । ଛୋଟ ମାଛ, ଜିଆ, ବେଙ୍ଗ ତଥା କୀଟପତଙ୍ଗ ଏହାର ଖାଦ୍ୟ । ପୋଷା କଇଁଛ ରୁଟି ଓ ଶାଗ ଖାଏ । ସେଠାକାର ଅଧିବାସୀମାନେ ଏହାର ମାଂସକୁ ଅତି ଖୁସିରେ ଖାଆନ୍ତି । ଜର୍ମାନର ଲୋକମାନେ ଉତ୍ସବ ଦିନରେ ଏହାର ମାଂସକୁ ଖାଆନ୍ତି ।

ମି. ବେରଲ କହନ୍ତି ଯେ ୧୯୨୭ ମସିହାରେ ସ୍ୱଚ୍ଛ ଜଳର ଦୁଇଶହ କଇଁଛ [illegible] ଆମେରିକାରୁ ଅଣା ଯାଇଥିଲା । ସେହି ବର୍ଷ ଇଂଲଣ୍ଡର ଏକ ହୋଟେଲରେ ଏକାଥରେ ୭୦ଟି କଇଁଛକୁ ହତ୍ୟା କରାଗଲା ଏବଂ ଅବଶିଷ୍ଟଙ୍କୁ ପାଳନ କରିବା ପାଇଁ ରଖାଗଲା । ଇଂରେଜମାନଙ୍କ ଠାରୁ ଆମେରିକୀୟମାନେ ଏହାକୁ ଖାଇବାକୁ ବେଶୀ ପସନ୍ଦ କରନ୍ତି ।

କେତେକ କଇଁଛ କାଦୁଅରେ ବି ରହନ୍ତି । ଏମାନେ ଯୁକ୍ତରାଷ୍ଟ୍ର ଆମେରିକା, ମେକ୍ସିକୋ ତଥା ମଧ୍ୟ ଆମେରିକାର ପଙ୍କିଳ ନଦୀ ଓ ହ୍ରଦରେ ରହନ୍ତି । ତାର ପେଟର ଗଠନ ଏପରି ଯେ ସେ ଦୁଇଭାଗ ହୋଇପାରେ । କେତେକ ପୁରୁଷ କଇଁଛର ପାଦରେ କଣ୍ଟା ଭଳି ଉଠିଥାଏ ଯାହା ଘଷି ହେଲେ ଏକ ପ୍ରକାର ଶବ୍ଦର ସୃଷ୍ଟି ହୁଏ । ପଙ୍କରେ ଥିବା କଇଁଛ ଦେହରୁ ଏକ ପ୍ରକାର ଦୁର୍ଗନ୍ଧ ବାହାରେ । ଏଥିପାଇଁ ତା ପାଖରେ ବେଶୀ ସମୟ ରହି ହୁଏ ନାହିଁ ।

ସ୍ପେନ ଦେଶରେ ଏକ ପ୍ରକାରର ବିଚିତ୍ର କଇଁଛ ଦେଖାଯାଏ । ଯେତେବେଳେ ତାର ରହିବା ସ୍ଥାନର ପାଣି ଖରାପ ହୋଇଯାଏ ସେତେବେଳେ ତାକୁ ଏକ ପ୍ରକାର ରୋଗ ହୁଏ । ସେଥିପାଇଁ ସେ ଫୁଲିଯାଏ । ତା' ଦେହରେ ଚେକା ଚେକା ଦାଗ ହୋଇଯାଏ । ଜଣାପଡ଼େ ଯେପରି କି ତାକୁ କୁଷ୍ଠ ରୋଗ ହୋଇଛି ।

କେତେକ କଇଁଛର ଦେହ ଅନେକ ପ୍ରକାର ଚିହ୍ନ ଦ୍ୱାରା ସୁସଜ୍ଜିତ ହୋଇଥାଏ । ତାକୁ ଦେଖିବାକୁ ବହୁତ ସୁନ୍ଦର ଲାଗେ । ଏକ ଜାତିର କଇଁଛର ମୁଣ୍ଡ, ପାଦ ଓ ବେକରେ କମଳା ରଙ୍ଗର ଗାର ସବୁ ପଡିଥାଏ ଏବଂ ତା ପିଠିରେ ଧାରେ ଧାରେ ଏହି ରଙ୍ଗର ଚିହ୍ନ ଥାଏ । ଆଉ ଏକ ପ୍ରକାର କଇଁଛର ସାରା ଦେହରେ ସିନ୍ଦୂର ରଙ୍ଗର ଗାର ତଥା ଅର୍ଦ୍ଧ ଚନ୍ଦ୍ରାକାର ଚିହ୍ନ ଦେଖାଯାଏ ଏବଂ ମୁଣ୍ଡରେ ଲାଲ ରଙ୍ଗର ଗାର ପଡ଼ିଥାଏ ।

ଉତ୍ତର ବ୍ରାଜିଲ ତଥା ଗୁଏନାରେ ଦେଖା ଯାଉଥିବା ଏକ ପ୍ରକାର କଇଁଛ ପଙ୍କୁଆ ଜାଗାରେ ରହନ୍ତି । ମି. ଡ଼ିଟ୍‌ମାର ଏହି ପ୍ରକାର କଇଁଛର ଏକ ସୁନ୍ଦର ବର୍ଣ୍ଣନା କରିଛନ୍ତି । "ଏହାର ମୁଣ୍ଡ, ବେକ ତଥା ଦେହ ଏତେ ସମତଳ ଯେ ଦେଖିଲେ ଜଣାପଡ଼େ ଯେପରି କେହି ତା' ଦେହକୁ ଇସ୍ତ୍ରୀ କରି ଦେଇଛି । ଏହାର ବେକ ଓ ମୁହଁରେ ମାଂସ ଖଣ୍ଡ ଝୁଲି ରହିଥାଏ । ଯେତେବେଳେ ଏହା ପାଣିରେ ପହଁରିବାକୁ ଆରମ୍ଭ କରେ ସେତେବେଳେ ଏହି ମାଂସର ଖଣ୍ଡ ବିଚିତ୍ର ଭାବରେ ହଲେଇ ରହିଥାଏ । ଏହି ପ୍ରସାରିତ ମାଂସ ଖଣ୍ଡ ପାଇଁ ମାଛମାନେ ଆସନ୍ତି ଏବଂ ସେ ଶୀଘ୍ର ସେମାନଙ୍କୁ ଖାଇଯାଏ ।

## ଚିତ୍ର—୭ ଖିମକାପ୍ସ କଚ୍ଛପ

'ସ୍ନେକ ନେକ୍‌ଡ଼ ଟେରେପିନ' ଅର୍ଥାତ୍ ସାପ ସଦୃଶ ବେକଥିବା କଇଁଛର ବେକ ବହୁତ ଲମ୍ବା । ଅତ୍ୟନ୍ତ କଷ୍ଟରେ ସହିତ ସେ ତାର ବେକ ଭିତରକୁ ଟାଣିପାରେ । ଏହାର ବେକ ପିଠି ଭିତରେ ବହୁତ ସଙ୍କୁଚିତ ହୋଇଯାଏ ।

କେତେକ ଜାତିର କଇଁଛର ମୁଣ୍ଡ କୁମ୍ଭୀର ମୁଣ୍ଡ ପରି ହୋଇଥାଏ । ତାର ... ବଡ଼ ହୋଇଥାଏ ଏବଂ ମୁଣ୍ଡରେ ଏକ ପ୍ରକାର ମୋଟା ଓ ଶକ୍ତ ଥଣ୍ଟ ଲାଗିଥାଏ । ଏହାର ଲାଞ୍ଜ ମୋଟା ଓ ଚମଡ଼ାରେ ଢ଼ାଙ୍କି ହୋଇ ରହିଥାଏ । ଦୂରରୁ ଏହା କୁମ୍ଭୀର ଲାଞ୍ଜ ପରି ଜଣା ପଡ଼େ । ଏଥିପାଇଁ ଏହି ଜାତୀୟ କଇଁଛକୁ 'ଏଲିଗେଟର ଟେରେପିନ' କୁହାଯାଏ । ଏହା ଦକ୍ଷିଣ କାନାଡ଼ା, ଯୁକ୍ତରାଷ୍ଟ୍ର ଆମେରିକା ତଥା ମେକ୍‌ସିକୋରେ ଦେଖିବାକୁ ମିଳେ । ଏହା ମାଛ ତଥା ଜଳଚର ପକ୍ଷୀମାନଙ୍କୁ ପାଣି ଭିତରକୁ ଟାଣି ନେଇ ଖଣ୍ଡ ଖଣ୍ଡ କରି ଦିଏ । କେବେ କେବେ ଏମାନଙ୍କ ଓଜନ ସାଢେ ନଅ କିଲୋଗ୍ରାମ ପର୍ଯ୍ୟନ୍ତ ହୋଇଥାଏ । ଜୁନ୍ ଜୁଲାଇ ମାସରେ ସ୍ତ୍ରୀ କଇଁଛ ପାଣି ଛାଡ଼ି କୌଣସି ସୁରକ୍ଷିତ ସ୍ଥାନକୁ ଚାଲିଯାଏ । ସେଠାରେ ବାଲି ଖୋଳି ତା' ଭିତରେ ପଶିଯାଏ ଓ ଏକାଥରେ ୩୦।୪୦ ଅଣ୍ଡା ଦିଏ । ଏହି ଅବସ୍ଥାରେ ସେ ଏକ ସପ୍ତାହ ପର୍ଯ୍ୟନ୍ତ ପଡ଼ିରହେ । କେତେକ ଲୋକ ଏହାକୁ ଖାଆନ୍ତି, କିନ୍ତୁ ଏହାର ମାଂସ ସୁସ୍ୱାଦୁ ନୁହେଁ ।

ସ୍ୱଚ୍ଛ ଜଳରେ ରହୁଥିବା କଇଁଛର ପିଠି ଉପରେ ଚମଡ଼ାର ପରସ୍ତ ଥାଏ । ସେଥିପାଇଁ ଏହାର ପିଠି ଦେଖାଯାଏ ନାହିଁ । ଏହାର ବେକ ଲମ୍ବା ଓ ଗୋଲ ।

ଏହାର ପଞ୍ଝାରେ ପରଦା ଥାଏ ଯେଉଁଥି ପାଇଁ ସେ ସୁବିଧାରେ ଚଲାବୁଲା କରି ପାରେ । ଏହାର ପନ୍ଦର ପ୍ରକାର ଜାତି ଅଛି । ଏହା ଉତ୍ତର ଆମେରିକା, ଏସିଆ ଓ ଆଫ୍ରିକାରେ ଦେଖିବାକୁ ମିଳେ । ଏହି ଜାତିସ୍ତ ସବୁଠାରୁ ବଡ଼ ଆକାରର କଇଁଛ ଗଙ୍ଗାନଦୀରେ ମିଳିଥାଏ । ଏହାର ପିଠିର ଲମ୍ବା ଷାଠିଏ ସେ: ମି. । ଏହାର ମସ୍ତିଷ୍କକୁ ନଷ୍ଟ କରିଦେଲେ ମଧ୍ୟ ସେ ତାର ପାଟିକୁ ଖୋଲିପାରେ । କେହି ତା' ସହିତ ଲାଗିଲେ ସେ ମୋଟା ସ୍ୱରରେ ଧୀରେ ଧୀରେ ପାଟିକରେ ।

ଆଫ୍ରିକାରେ ଏହି ଜାତିର କେବଳ ଗୋଟିଏ ପ୍ରକାର କଇଁଛ ଦେଖିବାକୁ ମିଳେ । ଏହାର ନାମ 'ନାଇଲ ଟ୍ରାୟୋନିକସ' । ଏହା ନୀଳ ନଦୀଠାରୁ କଙ୍ଗୋ ପ୍ରଦେଶ ପର୍ଯ୍ୟନ୍ତ ଦେଖିବାକୁ ମିଳେ । ଗଙ୍ଗାରେ ମିଳୁଥିବା କଇଁଛ ଠାରୁ ଏମାନେ କିଛି ବଡ଼ ଦେଖା ଯାଆନ୍ତି । ଗୋଟିଏ ବଡ଼ କଇଁଛର ପିଠିର ଲମ୍ବା ନବେ ସେ: ମି: ପର୍ଯ୍ୟନ୍ତ ହୋଇଥାଏ । ଏହାର ଓଜନ ପନ୍ଦର କିଲୋଗ୍ରାମ ହୁଏ । ଆରବର ଅଧିବାସୀମାନେ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଏହାକୁ ଦେଖନ୍ତି । କାରଣ ସେମାନେ ବିଶ୍ୱାସ କରନ୍ତି ଯେ ଏହି କଇଁଛ କୁମ୍ଭୀର ଖାଏ । କେବେ କେବେ ଏହି ଲୋକମାନେ ଏହାର ମାଂସକୁ ମଧ୍ୟ ଖାଆନ୍ତି ।

ଆମେରିକାର 'ଟ୍ରାୟୋନିକସ୍' ଏହି ଜାତିଠାରୁ ଶ୍ରେଷ୍ଠ ଓ ପଇଁତାଳିଶି ସେ:ମି.ରୁ [illegible] ଲମ୍ବା ହୁଅନ୍ତି ନାହିଁ । ଲୋକମାନେ ଏହାର ମାଂସକୁ ଆନନ୍ଦର ସହିତ ଖାଆନ୍ତି । ଆ[illegible]ରିକା ଯୁକ୍ତରାଷ୍ଟ୍ର ବଜାରରେ ଏହା ବହୁତ ମିଳେ । ନିଗ୍ରୋ ଜାତିର ଲୋକେ ତେଣ୍ଟା ସା[illegible] ଏହାକୁ ଧରନ୍ତି । ବହୁତ କଇଁଛ ଧରି ପାରିଲେ ସେମାନେ ଏହାର ମୁଣ୍ଡକୁ କାଟି ଦିଅନ୍ତି ଏବଂ ପିଠି ମଝିରେ ଏକ କଣା କରିଦିଅନ୍ତି । ସେଇ କଣା ସାହାଯ୍ୟରେ ସେମାନେ ତାର ଭିତରର ଜିନିଷକୁ ପରିଷ୍କାର କରିଦିଅନ୍ତି ଏବଂ ତା'ପରେ ଲୋକମାନେ ତାକୁ ନିଆଁରେ ପୋଡ଼ି ଖୁସିରେ ଖାଆନ୍ତି ।

ଏକ ପ୍ରକାର ସାମୁଦ୍ରିକ କଇଁଛ ଅଛନ୍ତି ଯାହାର ଚର୍ବି ସାଗୁଆ ରଙ୍ଗର ହୋଇଥାଏ । ତେଣୁ ଏହାକୁ ସବୁଜ ସାମୁଦ୍ରିକ କଇଁଛ ବୋଲି କହନ୍ତି । ଲୋକେ ଏହାର ମାଂସକୁ ଝୋଳ କରି ଖାଆନ୍ତି । ଏହାକୁ ଲୋକମାନେ ବହୁତ ପସନ୍ଦ କରନ୍ତି । ଏହି ଜୀବ ଶୀତୋଷ୍ଣ ଅଞ୍ଚଳର ସମୁଦ୍ରରେ ଦେଖିବାକୁ ମିଳେ । ଆଟଲାଣ୍ଟିକ୍ ସମୁଦ୍ର କୂଳରେ ଏମାନଙ୍କୁ ପହଁରୁଥିବାର ଦେଖାଯାଏ । ଯେତେବେଳେ ସେ ସମୁଦ୍ରରେ ଶୋଇଥିବା ଅବସ୍ଥାରେ ପହଁରେ ସେତେବେଳେ ତାକୁ ଧରିବା ଖୁବ୍ ସହଜ ହୁଏ । ଯେବେ ସେ ଅଣ୍ଡା ଦେବାପାଇଁ କୂଳକୁ ଆସେ ସେତେବେଳେ ନାଉରିଆମାନେ ଏହାକୁ ବାଉଁଶ[illegible]ଇ ଦିଅନ୍ତି ଏବଂ ତାକୁ ସହଜରେ ଧରି ନେଇ ପାରନ୍ତି ।

ସ୍ତ୍ରୀ କଇଁଛ ବାଲିରେ ଗାତ ଖୋଳେ ଏବଂ ସେଥିରେ ଅଣ୍ଡା ଦିଏ । ଅଣ୍ଡା ସବୁ ପ୍ରାୟ ଗୋଲାକାର । ତା'ଉପରେ ନରମ ଚମଡ଼ାର ଏକ ଆବରଣ ଥାଏ । ଗୋଟିଏ ଗୋଟିଏ ଗାତରେ ପ୍ରାୟ ଦୁଇଶହ ପର୍ଯ୍ୟନ୍ତ ଅଣ୍ଡା ରହିପାରେ । କଇଁଛ ଏହି ଗାତକୁ ଆବୃତ କରି ତାହା ଉପରେ ଥିବା ବାଲି ସମାନ କରିଦିଏ ଯେପରି ଜଣା ପଡିବ ନାହିଁ ଯେ ଏଠି ଗାତ ଖୋଳାହୋଇଛି । ଅଠର ଦିନରୁ ତିରିଶି ଦିନ ମଧ୍ୟରେ ଅଣ୍ଡା ଫୁଟି କଇଁଛ ଛୁଆମାନେ ଗାତରୁ ବାହାରି ଆସନ୍ତି ଏବଂ ଶୀଘ୍ର ପାଣି ଭିତରକୁ ଖସିଯାନ୍ତି । ଯେଉଁ ଛୁଆଗୁଡ଼ିକ ପାଣି ପର୍ଯ୍ୟନ୍ତ ଯାଇ ନପାରନ୍ତି ସେମାନଙ୍କୁ ଛଞ୍ଚାଣ ବା ଅନ୍ୟ ପକ୍ଷୀ ଖାଇଯାଆନ୍ତି । ପାଣି ନିକଟକୁ ଆସିବାମାତ୍ରେ କେତେକ ବଡ଼ ମାଛ ମଧ୍ୟ ତାଙ୍କୁ ଖାଇଯାଆନ୍ତି । ବଡ଼ କଇଁଛର ଓଜନ ଦୁଇଶହ କିଲୋ ପର୍ଯ୍ୟନ୍ତ ହୁଏ । ଏହାର ପିଠି ଏକ ମିଟର ଲମ୍ବା ହୁଏ, ରଙ୍ଗ ବାଦାମୀ ଏବଂ ଏହା ଉପରେ ହଳଦିଆ ଗାର ପଡିଥାଏ ।

'ହୋକ୍ସବିଲ ଟର୍ଟଲ୍' ଏକ ପ୍ରସିଦ୍ଧ ସାମୁଦ୍ରିକ କଇଁଛ । ଏହାର ଖପୁରି ବହୁତ ଦାମିକା । ଏହାର ପିଠି ଉପରେ ପତଳା ପତଳା ଅନେକ ରଙ୍ଗର ଚକ୍ଲା ଥାଏ । ଏହାକୁ ଗରମ ପାଣି ଭିତରେ ପକାଇ ତାହାର ମାଂସ ଓ ଚମଡ଼ା ଖଣ୍ଡିକୁ ଧୀରେ ଧୀରେ କାଢ଼ି ନିଆଯାଏ । ତା'ପରେ ଯେଉଁ ପ୍ରକାରର ବସ୍ତୁ ତିଆରି କରିବା କଥା ସେହି ପ୍ରକାର ଛାଞ୍ଚରେ ତାକୁ ରଖି ଦିଆଯାଏ । ଏଥିରେ ନାନା ପ୍ରକାର[illegible] ତିଆରି ହୁଏ ।

ପୂର୍ବ କାଳରେ ଲୋକେ ଜୀବନ୍ତ କଇଁଛକୁ ନିଆଁ ଉପରେ ଟାଙ୍ଗି ଦେଉଥିଲେ । ନିଆଁ ଲାଗି ତା'ପିଠିର ଚମଡ଼ା ଅଲଗା ହୋଇ ଯାଉଥିଲା । ଚମଡ଼ା ବାହାରି ଗଲାପରେ ଏହି ଅସହାୟ ଜୀବକୁ ପାଣିରେ ଛାଡ଼ି ଦେଉଥିଲେ । କଥିତ ଅଛି ଯେ ପୁଣି ଥରେ ଏମାନଙ୍କ ଶରୀର ଉପରେ ଚମଡ଼ା ତିଆରି ହୋଇ ଯାଉଥିଲା ।

'ଲଗରହେଡ୍' କଇଁଛର ଆକାର ବିଶେଷ ପ୍ରକାରର ଅଟେ । ଏହାର ମୁଣ୍ଡ ବହୁତ ବଡ଼ ଏବଂ ଆଗ ପଞ୍ଝାରେ ଦୁଇଟି କରି ନଖ ଥାଏ । ଏହାର ପିଠିର ଲମ୍ବ ଏକ ଦଶମିକ କୋଡ଼ିଏ ମିଟର ଏବଂ ଓଜନ ପ୍ରାୟ ଦୁଇଶହ ପଚିଶ କିଲୋଗ୍ରାମ । ଲୋକେ ଏହାର ମାଂସ ମଧ୍ୟ ଖାଆନ୍ତି ।

